# ଆଦିକବି

# ସାରଳା ଦାସ





ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର
ଓଡ଼ିଶା, ଭୁବନେଶ୍ୱର

# ଆଦି କବି ସାରଳା ଦାସ


| | |
|---|---|
| ଲେଖକ | ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି |
| ପ୍ରଥମ ପ୍ରକାଶ | ୨୦୦୦ |
| ପ୍ରକାଶକ | ଶ୍ରୀ ପାର୍ଥସାରଥି ଗୁହ, ଆଇ.ଏ.ଏସ୍<br>ନିର୍ଦ୍ଦେଶକ, ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା<br>ଜନଶିକ୍ଷା ଭବନ, ୟୁନିଟ୍ - ୫<br>ଭୁବନେଶ୍ୱର - ୭୫୧ ୦୦୧ |
| ମୁଦ୍ରଣ ସଂଖ୍ୟା | ଦୁଇ ହଜାର |
| ପ୍ରକାଶନ ସଂଖ୍ୟା : | ଏସ୍. ଆର. ସି. - ୨୯୫-୧/୨୦୦୦ |
| ମୁଦ୍ରଣ | ଭୋଳାନାଥ ପ୍ରେସ୍<br>ବମିଖାଲ୍, ଭୁବନେଶ୍ୱର |
| ମୂଲ୍ୟ | ଚାରି ଟଙ୍କା ମାତ୍ର |


# ADIKABI SARALA DAS


| | |
|---|---|
| Written by | **Dr. Janaki Ballava Mohanty** |
| Ist Edition | 2000 |
| Published by | Shri Parthasarathi Guha, I.A.S.<br>Director, **State Resource Centre for Adult Education, Orissa**<br>Janasiksha Bhavan, Unit - V,<br>Bhubaneswar - 751 001 |
| No. of Copies Printed | 2000 |
| Publication No. | SRC - 295-1/2000 |
| Printed at | Bholanath Press<br>Bomikhal, Bhubaneswar-10 |
| Price | Rupees four only |

ପ୍ରାୟ ପାଞ୍ଚ ଶହ ବର୍ଷ ପୂର୍ବର କଥା । ସେତେବେଳେ ଆମ ଓଡ଼ିଶାରେ ଜଣେ ମହାନ କବି ଜନ୍ମ ହୋଇଥିଲେ । ତାଙ୍କ ନାଁ ସାରଳା ଦାସ । ପ୍ରଥମେ ତାଙ୍କର ନାମ ଥିଲା ସିଦ୍ଧେଶ୍ୱର ପରିଡ଼ା । ସେ ଜନ୍ମିଥିଲେ ଏକ କୃଷକ ପରିବାରରେ । ତାଙ୍କ ଘର ଥିଲା ଜଗତସିଂହପୁରର ସାରଳା ଠାକୁରାଣୀଙ୍କ ମନ୍ଦିର ନିକଟରେ ।

ସେତେବେଳେ ଓଡ଼ିଶାର ରାଜା ଥିଲେ କପିଳେନ୍ଦ୍ର ଦେବ । ତାଙ୍କ ରାଜତ୍ୱ କାଳରେ (୧୪୪୦-୯୭) ଓଡ଼ିଶାର ବହୁତ ଉନ୍ନତି ହୋଇଥିଲା । ଲୋକେ ଶାନ୍ତିରେ ଚଳୁଥିଲେ । ରାଜା କପିଳେନ୍ଦ୍ର ଥିଲେ ଖୁବ୍ ବୀର ଓ ସାହସୀ । ସେ ଅନେକ ରାଜ୍ୟ ଜୟ କରିଥିଲେ । ତାଙ୍କ ଯୁଦ୍ଧ ଯାତ୍ରାବେଳେ ସିଦ୍ଧେଶ୍ୱର ବୋଧହୁଏ କେତେକ ରାଜ୍ୟକୁ ଯାଇଥିଲେ । ସିଦ୍ଧେଶ୍ୱର ସାରଳା ଦେବୀଙ୍କୁ ପୂଜା କରୁଥିଲେ । ଦେବୀଙ୍କ ଦୟାରୁ ସେ କବି ହୋଇ ପାରିଥିଲେ ବୋଲି ସେ ଲେଖି ଅଛନ୍ତି । ନିଜକୁ ସାରଳା ଦେବୀଙ୍କ ଦାସ ବୋଲି ଚିହ୍ନେଇ ଯାଇ ଅଛନ୍ତି । ସେଥିପାଇଁ ସେ ବହୁ କାଳରୁ ସାରଳା ଦାସ ନାମରେ ଜଣାଶୁଣା ।

ସେତେବେଳେ ଓଡ଼ିଆରେ ପୁରାଣ, ଛାନ୍ଦ, କାବ୍ୟ ପ୍ରଭୃତି ଲେଖା ହୋଇ ନଥିଲା । ଜାଣିବା ଶୁଣିବା ଲୋକଙ୍କ ସଂଖ୍ୟା ଥିଲା ଅଳ୍ପ । ସେଇମାନେ କେବଳ ସଂସ୍କୃତ ଲେଖି ପଢ଼ି ଜାଣିଥିଲେ । ତାଳପତ୍ର

ଉପରେ ଲେଖନରେ ଲେଖା ଲେଖି ହେଉଥିଲା । ସିଦ୍ଧେଶ୍ୱର ବା ସାରଳା ଦାସ ଲୋକଙ୍କ ଉପକାର ଲାଗି ଓଡ଼ିଆରେ କେତେକ ପୁରାଣ ଲେଖିଥିଲେ । ଲୋକେ ସହଜରେ ବୁଝିପାରିବେ ବୋଲି ସେ ସେଗୁଡ଼ିକୁ ସରଳ ଓ ଲୋକେ କହୁଥିବା ଭାଷାରେ ଲେଖିଥିଲେ । ଏହା ଫଳରେ ଓଡ଼ିଆ ଭାଷାର ମୂଳଦୁଆ ପଡ଼ିଲା । ସାରଳା ଦାସ ହେଲେ ଆମ ସାହିତ୍ୟର ପ୍ରଥମ ବା ଆଦି କବି ।

**କବିଙ୍କ ରଚନାବଳୀ :**

କବି ଲେଖିଯାଇଥିବା ପୁରାଣ ଗୁଡ଼ିକ ହେଉଛି - ''ବିଲଙ୍କା ରାମାୟଣ'', ''ଚଣ୍ଡୀ ପୁରାଣ'' ଓ ''ମହାଭାରତ'' । ସେତେବେଳେ ଭାରତର ବହୁ ଭାଷାରେ ଏପରି ପୁରାଣ ଲେଖା ହୋଇ ନଥିଲା । ସାରଳା ଦାସଙ୍କ ଭଳି ଜଣେ ସାଧାରଣ ଚାଷୀ ଏହା କରିପାରିଥିଲେ । ଏହା ବାସ୍ତବିକ୍ ଆଶ୍ଚର୍ଯ୍ୟର କଥା । କବି ତାଙ୍କର ସାରା ଜୀବନକାଳ ଯେପରି ଏଇ ସବୁ ଗ୍ରନ୍ଥ ଲେଖିବାରେ କଟାଇ ଦେଇଥିଲେ । ଛପା ହୋଇଥିବା କବିଙ୍କ ହାତ ଲେଖା ''ମହାଭାରତ''ରେ କେବଳ ଏକ ଲକ୍ଷ ଚାଳିଶ ହଜାର ପଦ ରହିଛି । କବି ନିଜକୁ ମୂର୍ଖ ବୋଲି ଲେଖି ଥିଲେ ହେଁ ସେ ପ୍ରକୃତରେ ପଣ୍ଡିତ ଥିଲେ । କବି ସଂସ୍କୃତ ପଣ୍ଡିତଙ୍କଠାରୁ ପୁରାଣ ଶୁଣି ତାକୁ ନେଇ ଓଡ଼ିଆରେ ପୁରାଣ ଲେଖିଛନ୍ତି ବୋଲି କେହି କେହି ଅନୁମାନ କରିଥାନ୍ତି । ମାତ୍ର ଏହା ଠିକ୍ ନୁହେଁ । କବି ଲେଖିଛନ୍ତି, ସାରଳା ଦେବୀ ତାଙ୍କୁ ଯାହା ସ୍ୱପ୍ନରେ କହିଛନ୍ତି ତାକୁ ହିଁ ସେ ପୁରାଣରେ ଲେଖିଛନ୍ତି । ଏହା ମଧ୍ୟ ଠିକ୍ ନୁହେଁ । ଲୋକେ କବିଙ୍କ ଓଡ଼ିଆ ପୁରାଣକୁ ସଂସ୍କୃତ ପୁରାଣ ଭଳି ଆଦର କରନ୍ତୁ, ସେଥିପାଇଁ ସେ ଏପରି ଲେଖିଯାଇଥିଛନ୍ତି ।

କବି ସଂସ୍କୃତ ପୁରାଣ, କାବ୍ୟ ପ୍ରଭୃତି ପଢ଼ିଥିଲେ । ଏହାଛଡ଼ା ସେ ଜ୍ୟୋତିଷ, ଆୟୁର୍ବେଦ ବା ଚିକିତ୍ସା ଶାସ୍ତ୍ର, ଧନୁର୍ବେଦ ବା ଯୁଦ୍ଧ ବିଦ୍ୟା, ତନ୍ତ୍ରବିଦ୍ୟା ପ୍ରଭୃତି ମଧ୍ୟ ଜାଣିଥିଲେ । କବି ସେହି ସବୁ ବିଷୟର ଅନେକ କଥା ତାଙ୍କ ପୁରାଣରେ ଲେଖିଅଛନ୍ତି । ସୁନ୍ଦର ଭାବେ କଳ୍ପନା କରି, ଭାବି ଚିନ୍ତି ସେ ମହାଭାରତ ଓ ଅନ୍ୟାନ୍ୟ ପୁରାଣ ଲେଖିଥିଲେ । ତାଙ୍କ ମହାଭାରତରେ ମଧ୍ୟ ସେ ସ୍ୱୀକାର କରି ଲେଖିଛନ୍ତି -

''ଏ ମହାଭାରତ ପଦ ଅମୃତ ସମାନ
ଲେଖଇ ସାରଳା ଦାସ ହୋଇ ସାବଧାନ ।''

(ଉଦ୍‌ଯୋଗ ପର୍ବ)

**ବିଲଙ୍କା ରାମାୟଣ :**

କବି ପ୍ରଥମେ ଯେଉଁ ପୁରାଣଟି ଲେଖିଥିଲେ ତାହା ହେଉଛି 'ବିଲଙ୍କା ରାମାୟଣ' । ଶିବ ଓ ପାର୍ବତୀଙ୍କ କଥୋପକଥନ ବା ପ୍ରଶ୍ନଉତ୍ତର ରୀତିରେ ଏହି ପୁରାଣଟି ଲେଖା ହୋଇଛି । ଲଙ୍କାର ଅତ୍ୟାଚାରୀ ରାଜା ରାବଣକୁ ମାରିବା ପରେ ଶ୍ରୀ ରାମଚନ୍ଦ୍ର ଅଯୋଧ୍ୟାକୁ ଫେରି ଆସିଥିଲେ । କୁଳଗୁରୁ ବଶିଷ୍ଠଙ୍କ ଆଗରେ ସେ ଆପଣାର ଲଙ୍କା ଜୟ ବିଷୟ କହିଥିଲେ । ସେତେବେଳେ ଦେବୀ ସୀତା ପାଖରେ ଥିଲେ । ସେ ଏହାଶୁଣି ଭିନ୍ନ ମତ ପ୍ରକାଶ କରିଥିଲେ । ସେ କହିଥିଲେ - ''ପ୍ରକୃତରେ ମୋରି ଯୋଗୁ ହିଁ ରାବଣ ମରିଛି । ଶ୍ରୀରାମ ଯଦି ପ୍ରକୃତରେ ବୀର, ତେବେ ସେ ବିଲଙ୍କାର ରାଜା ସହସ୍ରଶିରା ରାବଣକୁ ମାରନ୍ତୁ । ତା' ହେଲେ ତାଙ୍କ ବୀର ପଣିଆ ଜଣା ପଡ଼ିବ ।'' ରାମଚନ୍ଦ୍ର ଏହାଶୁଣି ସଙ୍ଗେ ସଙ୍ଗେ

ସେଇ ସହସ୍ରଶିରାକୁ ମାରିବା ପାଇଁ ବିଲଙ୍କାକୁ ଗଲେ । ମାତ୍ର ସେଇ ଅସୁରକୁ ସେ ମାରି ପାରିଲେ ନାହିଁ । ଦେବତାଙ୍କ ପରାମର୍ଶ କ୍ରମେ ସୀତାଙ୍କୁ ବିଲଙ୍କାକୁ ଯିବାକୁ ପଡ଼ିଲା । ସୀତାଙ୍କ ଯୋଗୁ ହିଁ ସହସ୍ରଶିରାର ମୃତ୍ୟୁ ହେଲା । ନାରୀ ଖୁବ୍ ଶକ୍ତିଶାଳୀ ଓ ସମାଜରେ ନାରୀର ସ୍ଥାନ ଖୁବ୍ ଉଚ୍ଚରେ । ଏହା କବି ଏହି ପୁରାଣରେ ଦର୍ଶାଇ ଅଛନ୍ତି । ଏହାର କାହାଣୀ ସେ ସଂସ୍କୃତ 'ଅଦ୍ଭୁତ ରାମାୟଣ'ରୁ ସଂଗ୍ରହ କରିଅଛନ୍ତି । ମାତ୍ର ତାକୁ ସେ ଏକ ନୂଆ ଢ଼ଙ୍ଗରେ ରୂପ ଦେଇଛନ୍ତି ।

**ମହାଭାରତ :**

ଏହାପରେ ସେ ମହାଭାରତ ଲେଖିଥିଲେ । ଏଇଟି ଅଠର ଖଣ୍ଡରେ ଶେଷ ହୋଇଛି । ଏହା ତାଙ୍କର ସବୁଠାରୁ ବଡ଼ ଓ ଭଲ ରଚନା । ଏହା ଅଠର ଖଣ୍ଡ ବା ପର୍ବରେ ଲେଖା । ତାଙ୍କର ଶେଷ ଲେଖା ହେଉଛି 'ଚଣ୍ଡି ପୁରାଣ' । ଏହାର କଥା ବା ବିଷୟକୁ ସେ 'ମାର୍କଣ୍ଡେୟ ଚଣ୍ଡି' ବା 'ଦେବୀ ଭାଗବତ'ରୁ ଗ୍ରହଣ କରିଛନ୍ତି । ଦେବୀ ଦୁର୍ଗାଙ୍କ ଯୋଗୁଁ ଅତ୍ୟାଚାରୀ ମହିଷାସୁର ଶେଷରେ ମରିଥିଲା । ଏହି ବିଷୟ ସେ ଏଥିରେ ବର୍ଣ୍ଣନା କରିଛନ୍ତି । ସଂସ୍କୃତ ପୁରାଣର କଥା ଓ ବିଷୟକୁ କବି ଏଥିରେ ଅନୁସରଣ କରିଛନ୍ତି । ମାତ୍ର ତାକୁ ଆପଣା କଳ୍ପନା ଅନୁଯାୟୀ ସେ ନୂଆ ରୂପ ଦେଇଅଛନ୍ତି । ଏହି ପୁରାଣରେ ମଧ୍ୟ ସେ ନାରୀର ଶକ୍ତି ଓ ମହିମାକୁ ଅଧିକ ବୋଲି ଦେଖାଇ ଅଛନ୍ତି । ଏହା ବର୍ଣ୍ଣନା କରି ସେ ଲେଖିଛନ୍ତି -

''ଜାତ କଲା କାଳେ ମାତା ରୂପ ସେ ହୁଅନ୍ତି
ଯୌବନରେ ପତ୍ନୀ ରୂପେ ମୋହିତ କରାନ୍ତି ।

ଅନ୍ତକାଳେ ସେମାନେ ଯେ ହୁଅନ୍ତି କାଳିକା
ଶେଷକାଳେ ହୁଅନ୍ତି ସେ ହିଙ୍ଗୁଳାର ଶିଖା ।''

ଅଠର ପର୍ବ ବିଶିଷ୍ଟ କବିଙ୍କ 'ମହାଭାରତ'ଟି 'ଦାଣ୍ଡି ମହାଭାରତ' ନାମରେ ପରିଚିତ । ଏହାର ଧାଡ଼ିମାନଙ୍କ ମଧ୍ୟରେ ଅକ୍ଷର ସଂଖ୍ୟାରେ ସମତା ରଖାଯାଇ ନାହିଁ । କେଉଁ ଧାଡିରେ ବାର ଅକ୍ଷର ତ କେଉଁଠି ଅଠର ଅକ୍ଷର । ତଥାପି ଦୁଇ ଧାଡିର ଶେଷ ଅକ୍ଷରରେ ପଦ ପଡ଼ିଛି । ଏହାର ନାମ ହେଉଛି ଦାଣ୍ଡିବୃତ୍ତ । ସଂସ୍କୃତ ମହାଭାରତ ଭଳି କୌରବ ପାଣ୍ଡବଙ୍କ ମଧ୍ୟରେ ବିବାଦ, ଯୁଦ୍ଧ ଶେଷରେ ଅହଂକାରୀ କୌରବଙ୍କର ପରାଜୟ ଓ ପାଣ୍ଡବଙ୍କର ବିଜୟ ଏଥିରେ ବର୍ଣ୍ଣନା କରାଯାଇଅଛି । ଶ୍ରୀକୃଷ୍ଣ, ଯୁଧିଷ୍ଠିର, ଭୀମ, ଅର୍ଜ୍ଜୁନ, କୁନ୍ତୀ, ଦ୍ରୌପଦୀ, ଗାନ୍ଧାରୀ, ଧୃତରାଷ୍ଟ୍ର, ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଦୁର୍ଯ୍ୟୋଧନ, ଦୁଃଶାସନ, ଶକୁନି ପ୍ରଭୃତି ଚରିତ୍ରମାନଙ୍କ ବିଷୟ ଏଥିରେ ବର୍ଣ୍ଣନା କରାଯାଇଅଛି । ମାତ୍ର ସାରଳା ଦାସ ପୁରାଣର ଘଟଣା ଓ ସେଇ ସବୁ ଚରିତ୍ରକୁ ଭିନ୍ନ ଭାବରେ ଏଥିରେ ବର୍ଣ୍ଣନା କରିଅଛନ୍ତି । ଆପଣାର ଅଦ୍‌ଭୁତ କବିତ୍ୱ ବଳରେ ତାହା ଏକ ନୂଆ ରୂପ ନେଇଛି ।

ତାଙ୍କ ମହାଭାରତରେ ପ୍ରାୟ ତିରିଶ ଗୋଟିରୁ ଅଧିକ ନୂତନ କାହାଣୀ ରହିଛି । ବହୁ କାଳ୍ପନିକ ଚରିତ୍ରକୁ ମଧ୍ୟ କବି ସୃଷ୍ଟି କରିଯାଇଛନ୍ତି । ସାରଳା ଦାସଙ୍କ ପରେ ଓଡ଼ିଶାର ବହୁ କବି ଓ ଲେଖକ ଏହି ବିଷୟକୁ ନେଇ କାବ୍ୟ, କବିତା, ନାଟକ ପ୍ରଭୃତି ଲେଖିଛନ୍ତି । ଏହି ସବୁ ବିଷୟ ହେଉଛି - ସୁଗନ୍ଧିକା ହରଣ, ଚନ୍ଦ୍ରାବଳୀ ହରଣ, ନୀଳେନ୍ଦ୍ରୀ ହରଣ, ଶୋଭାବତୀ ହରଣ, କୁଣ୍ଡଳା ଦୈତ୍ୟ ବଧ, ଜୟସିଂହ ବଧ, ଅର୍ଜ୍ଜୁନ

ନାଗାର୍ଜୁନ ଯୁଦ୍ଧ, ବେଲାବଳୀ ଚରିତ, କଦମ୍ବାସୁର, ମୋଢ଼ାସୁର, ବାବନାଭୂତ ଚରିତ, ବେଲାଳ ସେନ ଚରିତ ପ୍ରଭୃତି । ଏହିସବୁ ବିଷୟ ମଧ୍ୟରୁ ଅଧିକାଂଶ ହେଉଛି ବୀରତ୍ୱ ମୂଳକ ଅଥବା ପ୍ରେମ ମୂଳକ । ଏହିପରି କାଳ୍ପନିକ କାହାଣୀ ମାଧ୍ୟମରେ କବି ଗାଁ ଗହଳର ଜନ ସାଧାରଣଙ୍କୁ ନୀତି ଶିକ୍ଷା ଦେବାକୁ ଚାହିଁଛନ୍ତି ।

## ମହାଭାରତର ଚରିତ୍ର :

ମହାଭାରତର ଚରିତ୍ରମାନଙ୍କୁ ସେ ସାଧାରଣ ମଣିଷ ଭଳି ବର୍ଣ୍ଣନା କରିଛନ୍ତି । ଦେବଦେବୀ ହେଲେବି ସେମାନଙ୍କ ଠାରେ ମଣିଷ ଭଳି ଦୋଷ ଗୁଣ ଭରି ଦେଇଛନ୍ତି । ସେମାନେ ମଧ୍ୟ ସାଧାରଣ ମଣିଷଙ୍କ ଭଳି ରାଗ, ଲୋଭ, ହିଂସା କରନ୍ତି । ଅନ୍ୟର ଉନ୍ନତି ଦେଖି ସହି ପାରନ୍ତି ନାହିଁ । କପଟ ବ୍ୟବହାର କରନ୍ତି । ବେଳେବେଳେ ଖୁବ୍ ଖରାପ କାମ ମଧ୍ୟ କରିଥାନ୍ତି । ସଂସ୍କୃତ ମହାଭାରତର ଚରିତ୍ର ସବୁ ଦେବଦେବୀ । ସେମାନେ ମଣିଷଙ୍କଠାରୁ ଭିନ୍ନ । ମାତ୍ର ସାରଳା ଦାସଙ୍କ ପୁରାଣର ଚରିତ୍ର ସବୁ ମଣିଷମାନଙ୍କ ଭଳି କାର୍ଯ୍ୟ କରିଛନ୍ତି । କବିଙ୍କ ମହାଭାରତର ଭୀମ ହୁଣ୍ଡା, ଖାଇବା ପ୍ରିୟ । ଯୁଦ୍ଧ କରିବାକୁ ସେ ସବୁବେଳେ ଆଗ୍ରହୀ । ଶକୁନି ମହା କୁଚକ୍ରୀ ଓ କପଟୀ । ଦୁର୍ଯ୍ୟୋଧନଙ୍କୁ କବି ମାନୀ, ଅହଂକାରୀ ଓ ଶ୍ରୀକୃଷ୍ଣଙ୍କୁ କପଟୀ, ମିଥ୍ୟାବାଦୀ, ଲମ୍ପଟ ଓ ସୁବିଧାବାଦୀ ରୂପରେ ଚିତ୍ରଣ କରିଛନ୍ତି ।

କବି ଦ୍ରୌପଦୀ ଓ ଭୀମଙ୍କ ପତ୍ନୀ ହିଡ଼ିମ୍ବାଙ୍କ ମଧ୍ୟରେ କଳହର ବର୍ଣ୍ଣନା କରିଅଛନ୍ତି । ଏହା ଠିକ୍ ଗାଆଁର ଦୁଇ କଳି ହୁଡ଼ୀ ନାରୀଙ୍କ ଭଳି ହୋଇଅଛି । ଯୁଧିଷ୍ଠିର ରାଜସୂୟ ଯଜ୍ଞ କରିଥିଲେ । ଏହି ଯଜ୍ଞକୁ ଭୀମଙ୍କ

ପତ୍ନୀ ହିଡ଼ିମ୍ବୀକୁ ନିମନ୍ତ୍ରଣ କରାଯାଇ ନଥିଲା । ତଥାପି ସେ ତା'ର ପୁତ୍ର ଘଟୋତ୍କଚକୁ ନେଇ ଯଜ୍ଞସ୍ଥଳକୁ ଆସିଥିଲା । ଘଟୋତ୍କଚକୁ ସେ ପରାମର୍ଶ ଦେଇ କହିଥିଲା - "ତୁ ଯଜ୍ଞ ସ୍ଥଳରେ ସବୁ ଗୁରୁଜନଙ୍କୁ ନମସ୍କାର କରିବୁ । ମାତ୍ର ଦ୍ରୌପଦୀକୁ ନମସ୍କାର କରିବୁ ନାହିଁ ।" ତା ମତରେ ଦ୍ରୌପଦୀ ଅସତୀ । ଏଣୁ ସେ ନମସ୍କାର ଯୋଗ୍ୟ ନୁହେଁ । ଘଟୋତ୍କଚ ତାହାହିଁ କରିଛି । ସଉତୁଣୀର ପୁଅଠାରୁ ଠିକ୍ ସମ୍ମାନ ନ ପାଇବାରୁ ଦ୍ରୌପଦୀ ରାଗିଗଲେ । ଘଟୋତ୍କଚକୁ ଅଳ୍ପାୟୁ ହେବାକୁ ଅଭିଶାପ ଦେଇଦେଲେ । ହିଡିମ୍ବୀ ଏହା ସହିବ ବା କିପରି ? ସେ ମଧ୍ୟ ରାଗରେ ଦ୍ରୌପଦୀକୁ ଗାଳି ଦେବା ସଙ୍ଗେ ସଙ୍ଗେ ତା'ର ପୁଅମାନେ ବିନଷ୍ଟ ହେବେ ବୋଲି କହିଛି ।

ଯେତେ ଖାଇଲେ ବି ଭୀମଙ୍କର ପେଟ ପୂରେ ନାହିଁ । ପିଲାଟି ଦିନରୁ ସେ ଏହିପରି । ଲୁଚି କରି ଯାଇ ହାଣ୍ଡିଶାଳରେ ପଶେ, ଭାତ ଖାଏ । ଏହା ତାଙ୍କ ପିତା ପଣ୍ଡୁ ଦିନେ ଦେଖି ପାରିଲେ । ବାପାଙ୍କୁ ଦେଖି ଭୀମ ଦୌଡ଼ି ପଳାଇଲେ । ଭୀମକୁ ମାରିବା ପାଇଁ ପଣ୍ଡୁ ତା' ପଛେ ପଛେ ବାଡ଼ି ଧରି ଧାଇଁଲେ । ଏପରି ହେବା ସ୍ୱାଭାବିକ ଓ ଏକ ସାଧାରଣ ବିଷୟ । ସାରଳା ଦାସ ପୁରାଣର ଚରିତ୍ରମାନଙ୍କୁ ଏହିପରି ସାଧାରଣ ଭାବେ ବର୍ଣ୍ଣନା କରିଅଛନ୍ତି । ଶ୍ରୀକୃଷ୍ଣ ଥରେ ଯାଇ କୁବେରଙ୍କ ଘରେ ପହଞ୍ଚିଲେ । କୁବେର ଧନର ଦେବତା । ସେ ଶ୍ରୀକୃଷ୍ଣଙ୍କ ଭଳି ଅତିଥିଙ୍କ ଲାଗି ଭୋଜନର ବ୍ୟବସ୍ଥା କରିଛନ୍ତି । ତାଙ୍କ ଖାଇବା ପାଇଁ ଆୟୋଜନ କରାଯାଇଥିବା ଜିନିଷ ହେଉଛି ଲିଆ, ଦୁଧ, କଦଳୀ, ଶାକର ପ୍ରଭୃତି ଓଡ଼ିଆ ଘରର ଖାଇବା ସାମଗ୍ରୀ । ଓଡ଼ିଆ ଘରର କଥା ଲେଖା ଯାଇଥିବାରୁ ତାଙ୍କ ମହାଭାରତ ଲୋକଙ୍କ ଦ୍ୱାରା ଖୁବ୍ ଆଦରଣୀୟ ହୋଇଅଛି ।

ପ୍ରଭାସ ନିକଟରେ ଯଦୁବଂଶ ଧ୍ୱଂସ ହେଲା । ଏହାପରେ ନିକଟରେ ଥିବା ସମୁଦ୍ର କୂଳରେ ଶ୍ରୀକୃଷ୍ଣ ଦେହ ତ୍ୟାଗ କରିଥିଲେ । ତାଙ୍କର ଦେହକୁ ଅର୍ଜୁନ ସେଠାରେ ଦାହ କରିଥିଲେ । ମାତ୍ର ତାଙ୍କ ଦେହର କିଛି 'ଅପୋଡ଼ା' ରହିବାରୁ ସେ ତାକୁ ସମୁଦ୍ରରେ ଭସାଇ ଦେଲେ । ଏହା ସେଠାରୁ ଭାସି ଭାସି ଆସିଲା । ପୂର୍ବ ସାଗର କୂଳରେ ବାଙ୍କି ମୁହାଣ ନିକଟରେ ଦାରୁ ରୂପରେ ପହଞ୍ଚିଲା । ସେହି ଦାରୁରେ ଶ୍ରୀ ଜଗନ୍ନାଥଙ୍କ ପ୍ରତିମୂର୍ତ୍ତି ତିଆରି ହେଲା । ତାହା କଳି ଯୁଗରେ ଯେଉଁଠି ପୂଜା ପାଇଥିଲା ତାହା ହେଉଛି ପୁରୀ ଧାମ । ଏହା କବିଙ୍କର ଏକ ଚମତ୍କାର ପରିକଳ୍ପନା ।

ଏହିପରି ଭାବେ କବି ମହାଭାରତର ଚରିତ୍ରମାନଙ୍କୁ ପୂରା ପୂରି ଓଡ଼ିଆ ଓ ଓଡ଼ିଆଣୀ କରି ଦେଇଛନ୍ତି । ସେମାନଙ୍କ ଖାଇବା ପିଇବା, ଘରଦ୍ୱାର, ବେଶଭୂଷା, ଚଳଣି ବ୍ୟବହାର ସବୁ କିଛି ଓଡ଼ିଶାର ହୋଇଯାଇଛି । କବି ସାରଳା ଦାସ ପ୍ରଥମ କରି ତାଙ୍କ ପୁରାଣରେ ଓଡ଼ିଶା ବା 'ଓଡ୍ର ରାଷ୍ଟ୍ର'କୁ 'ଜମ୍ବୁ ଦ୍ୱୀପ ଭରଥ ଖଣ୍ଡ'ର ଏକ ମହାନ୍ ଅଂଶ ଭାବେ ଚିହ୍ନାଇଛନ୍ତି । ଏଣୁ ସିଏ ହିଁ ପ୍ରକୃତରେ ଓଡ଼ିଶା ଭୂମିର ମହାକବି ।

ଟିକିନିଖି ବର୍ଣ୍ଣନା କରିବାରେ ମଧ୍ୟ କବି ଥିଲେ ଧୁରନ୍ଧର । ବିଭିନ୍ନ ଦୃଶ୍ୟ, ପରିସ୍ଥିତି, ବିବାହ, ଯଜ୍ଞ, ମେଳା, ମହୋତ୍ସବ ପ୍ରଭୃତି ବିଭିନ୍ନ ସାମାଜିକ ଅନୁଷ୍ଠାନକୁ ସେ ସୁନ୍ଦର ଭାବରେ ବର୍ଣ୍ଣନା କରିଯାଇଛନ୍ତି ।

ସାରଳା ଦାସ ଦେବୀଙ୍କର ଭକ୍ତ ଥିଲେ । ଏଣୁ ଆପଣା ପୁରାଣମାନଙ୍କରେ ସେ ତାଙ୍କର ବନ୍ଦନା କରିଛନ୍ତି । ଏହାଛଡ଼ା ସେ ଜଗନ୍ନାଥ, ଶିବ, ବିଷ୍ଣୁ, ରାମ, କୃଷ୍ଣ, ସୂର୍ଯ୍ୟ, ଗଣେଶ ପ୍ରଭୃତିଙ୍କୁ ମଧ୍ୟ ବନ୍ଦନା କରିଛନ୍ତି । ଏପରିକି ନିରାକାର ବ୍ରହ୍ମଙ୍କୁ ମଧ୍ୟ ସେ ବନ୍ଦନା କରିଛନ୍ତି ।

ଏହି ଦୃଷ୍ଟିରୁ ସେ ଥିଲେ ଖୁବ୍ ଉଦାର । ଭାରତୀୟ ସଂସ୍କୃତିର ନୀତି ଉପଦେଶକୁ ସେ ତାଙ୍କ ପୁରାଣରେ ସୁନ୍ଦର ଭାବେ ବର୍ଣ୍ଣନା କରିଛନ୍ତି । ଧର୍ମରେ ଚଳିଲେ ଉନ୍ନତି; ଅଧର୍ମରେ ଚଳିଲେ ଦୁଃଖ ହିଁ ଭୋଗିବାକୁ ପଡିଥାଏ । ଭାରତର ରାଜ ଚକ୍ରବର୍ତ୍ତୀ ମାନଗୋବିନ୍ଦ ବା ଦୁର୍ଯ୍ୟୋଧନ ଏହି ଉପଦେଶ ପାଳନ କରି ନଥିଲା । ଏଣୁ ସେ ଶେଷରେ ରାଜ୍ୟ, ପୁତ୍ର, ପରିବାର ପ୍ରଭୃତି ସର୍ବସ୍ୱ ହରାଇଥିଲା । ମହାଭାରତର ଏହି ବିଷୟକୁ କବି ଅତି ସରସ ଓ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି ।

ସବୁ ମଣିଷଙ୍କ ପ୍ରତି କବିଙ୍କର ଥିଲା ଗଭୀର ମମତା । ସେ ଯୁଗରେ ସମାଜରେ ଜାତିଗତ ବିଭେଦ ରହିଥିଲା । ଏହାକୁ କବି ସମର୍ଥନ କରି ପାରି ନଥିଲେ । ସମସ୍ତେ ସାମାଜିକ ନ୍ୟାୟ ପାଆନ୍ତୁ, ଏହା ସେ ଇଚ୍ଛା କରୁଥିଲେ । ଆପଣା ପୁରାଣରେ ସେ ଏହା ଦର୍ଶାଇ ଅଛନ୍ତି । ଏପରିକି ବ୍ରାହ୍ମଣ ଚଣ୍ଡାଳ ମଧ୍ୟରେ ଭେଦ ନରହୁ ବୋଲି ମଧ୍ୟ ଇଚ୍ଛା କରିଛନ୍ତି । ସଭା ପର୍ବରେ ସେ ଲେଖିଛନ୍ତି —

''ଆଦି ହୁଁ ବ୍ରାହ୍ମଣ ଚଣ୍ଡାଳ ଯାଏ ଏକ ଆସନେ
ସବୁହିଁ ଏକ ତୁଲ୍ୟ ଭୋଜନ ବିଧାନେ ।
ରାଜ୍ୟମାନଙ୍କର ସନ୍ୟ ସେନା ଆଦି କରି
ବାଦ୍ୟକାରମାନଙ୍କୁ ହିଁ ରତ୍ନ ଯୋଗାଡମାନ ସମସରି ।''

### ଓଡ଼ିଶାର ମନୋରମ ଚିତ୍ର :

ସାରଳା ଦାସ ତାଙ୍କ ଜନ୍ମଭୂମି ଓଡ଼ିଶାକୁ ଖୁବ୍ ଭଲ ପାଉଥିଲେ । ଆମ ଦେଶର ନଦୀ, ପର୍ବତ, ମନ୍ଦିର, ତୀର୍ଥ ସ୍ଥାନମାନଙ୍କୁ ମଧ୍ୟ ଭଲ ପାଉଥିଲେ । ଓଡ଼ିଶାର ମାନ ବଢ଼ାଇବା ଲାଗି ଏ ଦେଶର ନାନା ସ୍ଥାନକୁ

ସେ ତାଙ୍କ ମହାଭାରତର କାହାଣୀ ସହ ଯୋଡି ଦେଇଛନ୍ତି । ହର ପାର୍ବତୀଙ୍କ ରହିବା ସ୍ଥାନ ହେଉଛି ହିମାଳୟର କୈଳାସ । ମାତ୍ର ସାରଳା ଦାସ ଏହାକୁ ଢ଼େଙ୍କାନାଳର କପିଳାସ ପର୍ବତ ବୋଲି ଉଲ୍ଲେଖ କରିଛନ୍ତି । କବିଙ୍କ ବର୍ଣ୍ଣନା ଅନୁସାରେ ଏହି କପିଳାସରୁ ପାଣ୍ଡବମାନେ ସ୍ୱର୍ଗକୁ ମହାଯାତ୍ରା ଆରମ୍ଭ କରିଥିଲେ ।

ତାଙ୍କ ବର୍ଣ୍ଣନା ଅନୁସାରେ ଶ୍ରୀକୃଷ୍ଣ ଓଡ଼ିଶାର ବାଙ୍କୀମୁହାଣ ପାଖ ସମୁଦ୍ର କୂଳକୁ ଭାରତର ସବୁଠାରୁ ପବିତ୍ର ସ୍ଥାନ ବୋଲି ବାଛି ନେଇଥିଲେ । ଏଣୁ ତାଙ୍କ ଇଚ୍ଛାରୁ ଏହିଠାରେ ସେ କଳି ଯୁଗରେ ଶ୍ରୀଜଗନ୍ନାଥ ରୂପେ ପୂଜା ପାଇଲେ । ଏହାହିଁ ହେଉଛି ଶ୍ରୀକ୍ଷେତ୍ର ବା ପୁରୁଷୋତ୍ତମ ପୁରୀ । ଏହି ସ୍ଥାନରେ ଭୀଷ୍ମଙ୍କର ଶବ ସଂସ୍କାର ହୋଇଥିଲା । ଶ୍ରୀକୃଷ୍ଣ ଦ୍ୱାରକାରେ ଥିବାବେଳେ ତାଙ୍କ ପୁତ୍ର ଶାମ୍ବଙ୍କୁ କୁଷ୍ଠରୋଗ ହୋଇଥିଲା । ଏହି ରୋଗରୁ ଆରୋଗ୍ୟ ଲାଭ କରିବା ଲାଗି ସେ ଓଡ଼ିଶାକୁ ଆସିଥିଲେ । ଚନ୍ଦ୍ରଭାଗା ନଦୀ କୂଳରେ ବାରବର୍ଷ ସୂର୍ଯ୍ୟଙ୍କୁ ପୂଜା କରିଥିଲେ । ରୋଗ ଭଲ ହୋଇଯିବା ପରେ ସେ ଏଠାରେ ସୂର୍ଯ୍ୟଙ୍କ ମୂର୍ତ୍ତି ପ୍ରତିଷ୍ଠା ମଧ୍ୟ କରିଥିଲେ । ପରେ ଏହିଠାରେ କୋଣାର୍କ ମନ୍ଦିରଟି ତିଆରି ହୋଇଥିଲା ।

ପାଣ୍ଡବମାନେ ସ୍ୱର୍ଗକୁ ଯିବା ପୂର୍ବରୁ ତୀର୍ଥ କରିବା ଲାଗି ମଧ୍ୟ ଓଡ଼ିଶା ଆସିଥିଲେ । ଏହି ରାଜ୍ୟର ଏକାମ୍ର କାନନ, କୀର୍ତ୍ତିବାସ କ୍ଷେତ୍ର (ଭୁବନେଶ୍ୱର), ନୀଳାଚଳ ଧାମ (ପୁରୀ), ଅର୍କକ୍ଷେତ୍ର (କୋଣାର୍କ), ପ୍ରାଚୀ ନଦୀ କୂଳର ଅଷ୍ଟଶମ୍ଭୁ ପ୍ରଭୃତି ସେମାନେ ଦର୍ଶନ କରିଥିଲେ । ବିଷ୍ଣୁ ମଧ୍ୟ ବାମନ ଅବତାରବେଳେ ବୈତରଣୀ ନଦୀ କୂଳରେ ଥିବା

ବାରାହୀ ଗ୍ରାମର ଧର୍ମ ଦାସ ପଣ୍ଡାର ପୁଅ ଭାବେ ଜନ୍ମ ହୋଇଥିଲେ । ଏହିପରି ଭାବେ କବି ତାଙ୍କ ପୁରାଣରେ ଓଡ଼ିଶାକୁ ଯୋଡି ଦେଇଛନ୍ତି । ଓଡ଼ିଶାର ମହତ୍ତ୍ୱ ବଢ଼ାଇଛନ୍ତି । ସେ ସବୁ ଦେବଦେବୀଙ୍କ ବନ୍ଦନା ତ କରିଛନ୍ତି, ମାତ୍ର ତାଙ୍କ ମହାଭାରତରେ ସେ ଶ୍ରୀଜଗନ୍ନାଥଙ୍କୁ ସବୁ ଦେବତାଙ୍କଠାରୁ ବଡ଼ ବୋଲି ଦର୍ଶାଇଛନ୍ତି ।

**କାହାଣୀ ମାଧ୍ୟମରେ ନୀତି ଶିକ୍ଷା :**

ମନରୁ ଫାନ୍ଦି ବା କଳ୍ପନା ବଳରେ କାହାଣୀ ସୃଷ୍ଟି କରିବାରେ କବି ଥିଲେ ଧୁରନ୍ଧର । ତାଙ୍କ 'ମହାଭାରତ' କାହାଣୀର ଭଣ୍ଡାର କହିଲେ ଚଳେ । ଏଇ କାହାଣୀଗୁଡିକ ଯେପରି ଶିକ୍ଷଣୀୟ, ସେହିପରି ଖୁବ୍ ଚମତ୍କାର । ବିଭିନ୍ନ ବୃତ୍ତିର୍ ଲୋକଙ୍କୁ ସେମାନଙ୍କ କାମର ମହତ୍ତ୍ୱ ବିଷୟରେ ଚେତାଇଦେବା ଲାଗି କବି ଏଇ ଗପସବୁ ବୋଧହୁଏ କଳ୍ପନା କରିଛନ୍ତି । ଏହିପରି·ଗୋଟିଏ ଗଳ୍ପ ହେଉଛି 'ଚଣ୍ଡି ପୁରାଣ'ର 'ଅମ୍ବିକା ଚଣ୍ଡାଳ' ଉପାଖ୍ୟାନଟି । କାହାଣୀଟି ଏହିପରି -

ନହୁଷ ରାଜାଙ୍କ ରାଜ୍ୟରେ ଲଗାତର କେତେ ବର୍ଷ ଧରି ବର୍ଷା ହେଲା ନାହିଁ । ଏଣୁ ଲୋକେ ଚାଷ କରିପାରିଲେ ନାହିଁ । ଖାଇବା ପାଇଁ ଧାନ ନାହିଁ । ଦେଶରେ ହା ହା କାର ପଡିଗଲା । ରାଜା ନହୁଷ ପ୍ରଜାମାନଙ୍କୁ ଭଲ ପାଉଥିଲେ । ବିପଦ ଆପଦ ଲାଗି ସେ ତାଙ୍କ ଅମାରରେ କିଛି ଶସ୍ୟ ସଞ୍ଚି ରଖିଥିଲେ । ଲୋକଙ୍କ ଦୁର୍ଦ୍ଦଶା ଦେଖି ସେ ସଞ୍ଚିଥିବା ଶସ୍ୟକୁ ପ୍ରଜାଙ୍କ ଭିତରେ ବାଣ୍ଟିଦେଲେ । ଏହିପରି ଭାବେ ଚାରି ବର୍ଷ କୌଣସି ମତେ ବିତିଗଲା । ମାତ୍ର ଏହାପରେ ଅବସ୍ଥା ଅସମ୍ଭାଳ ହେଲା । କିପରି ବର୍ଷା ହେବ ରାଜା ସେଥିପାଇଁ ବହୁତ ଚେଷ୍ଟା କଲେ । ବ୍ରାହ୍ମଣମାନଙ୍କୁ

ଡକାଇ ହୋମ, ଯଜ୍ଞ କରାଇଲେ । ତଥାପି ବର୍ଷା ହେଲା ନାହିଁ । ବ୍ରାହ୍ମଣ-ମାନଙ୍କର ମୁଖ୍ୟ ଥିଲେ ରାଜାଙ୍କର କୁଳ ପୁରୋହିତ ବଶିଷ୍ଠ । ସେ ମଧ୍ୟ କିଛି କରି ପାରିଲେ ନାହିଁ । ସେ ବ୍ରହ୍ମାଙ୍କ ନିକଟକୁ ଗଲେ । ତାଙ୍କୁ ରାଜ୍ୟବାସୀଙ୍କ ଦୁର୍ଗତି ବିଷୟ ଜଣାଇଲେ । ବ୍ରହ୍ମା ତହୁଁ ନାରଦଙ୍କୁ ଡାକି କହିଲେ - "ନାରଦ, ତୁମେ ତ ଚାରିଆଡେ ବୁଲୁଛ । ଯାଇ ଦେଖ, କେଉଁ ରାଜ୍ୟରେ ବଳକା ଧାନ ରହିଛି । ଶୀଘ୍ର ଆସି ମୋତେ କୁହ ।" ନାରଦ ବୁଲି ବୁଲି ଯାଇ ସିଂହଳ ଦ୍ୱୀପରେ ପହଞ୍ଚିଲେ । ସେଠାରେ ଗୋଟାଏ ଅଞ୍ଚଳରେ ଥିଲା ଜଣେ ହରିଜନ ମୁଖିଆ । ତା'ର ନାଁ ଅମ୍ବିକା । ତା'ର ଥିଲା ଅସୁମାରୀ ଧାନଗଦା । ଏତେ ଧାନଗଦା ଦେଖି ନାରଦ ଆଶ୍ଚର୍ଯ୍ୟ ହୋଇଗଲେ । ନାରଦଙ୍କୁ ଦେଖି ଅମ୍ବିକା ଯଥାବିଧି ପ୍ରଣାମ କଲା । ନାରଦ ପଚାରିଲେ - "ଆରେ ବାବୁ, ଏସବୁ ଧାନ ଗଦା କ'ଣ ତୋ'ର ?"

ଅମ୍ବିକା କହିଲା - "ଆଜ୍ଞା, ଆପଣଙ୍କ ଆଶୀର୍ବାଦରୁ ମୁଁ ପାଞ୍ଚଶହ ଅର୍ବୁଦ ଧାନ ଗଦା କରି ପାରିଛି ।"

କିପରି ଏତେ ଧାନ ଜମା କରିପାରିଲୁ ବୋଲି ପଚାରିବାରୁ ଅମ୍ବିକା କହିଲା - "ଆଜ୍ଞା, ମୁଁ ଜଣେ ସାମାନ୍ୟ ଅଛୁଁଆ ଜାତିର ଲୋକ । ପାଠ ଶାଠ ବି ପଢ଼ି ନାହିଁ । ମଇଳା ସଫା କରିବା ହେଉଛି ମୋର କାମ । ଏଇ କାମକୁ ମୁଁ ଯତନରେ କରିଛି । ମୋର ମୋଟେ ତିନି ମାଣ ଜମି ଥିଲା । ମୁଁ ସେଥିରେ ମଇଳାକୁ ଠିକଣା ରୂପେ ସାର ଭାବରେ ଲଗାଇଲି । ସାର ଦେବାରୁ ସେଥିରୁ ଯେଉଁ ଧାନ ପାଇଲି ତାକୁ ବିହନ କରି ଚାଷରେ ଲଗାଇଲି । ଫଳରେ ଅନ୍ୟମାନଙ୍କ ଅପେକ୍ଷା ମୁଁ ଅଧିକ ଧାନ ପାଇଲି ।

ସେଥିରୁ କିଛି ସଞ୍ଚୟ କରି ମୁଁ ଲୋକଙ୍କୁ କରଜ ଦେବାକୁ ଆରମ୍ଭ କଲି । ଏହି ଭାବରେ ମୋର ଧାନ ଓ ଧାନ ଜମି ବଢ଼ିଲା । ମୁଁ ଚଉଠେ ସୁଧ ନିଏ । କେହି ଅଧିକ ଦେଲେ ମଧ ତା' ନିଏ ନାହିଁ । ଅଭାବୀ ଲୋକେ ମୋ'ଠାରୁ ଧାନ ନେଲେ । ଉପକାର ପାଇବାରୁ ମୋତେ ଆଶୀର୍ବାଦ କଲେ । ସେମାନଙ୍କ କଲ୍ୟାଣରୁ ମୋର ଏପରି ବଢ଼ତି ହୋଇଛି ।''

ନାରଦ କହିଲେ - ''ଯାହା ହେଉ, ତୁ ବିବେକୀ, ପରୋପକାରୀ ଓ ଭାଗ୍ୟବାନ୍ । ଆଜି କିଛି ସାହାଯ୍ୟ ଆଶାରେ ମୁଁ ତୋ ପାଖକୁ ଆସିଛି । ନହୁଷ ରାଜାଙ୍କ ରାଜ୍ୟରେ ଚାରି ବର୍ଷ ହେଲା ମରୁଡି । ତୋ'ଠାରୁ କିମନି ଧାନ ନେବି ସେ ବିଷୟ ବୁଝିବା ଲାଗି ମୁଁ ଆସିଛି ।''

ଅମ୍ବିକା କହିଲା - ''ମହାପ୍ରୁ, ମୁଁ ଏବେ ଆଉ ଧାନ କରଜ ଦେଉ ନାହିଁ । ମୋର ଗୋଟିଏ ଦୁଃଖ । ମୋର ଗୋଟିଏ ବୋଲି ଝିଅ । ରୂପ ଗୁଣରେ ସେ ଖୁବ୍ ଭଲ । ହେଲେ ତା' ଲାଗି ଏ ପର୍ଯ୍ୟନ୍ତ ମନ ଲାଖି ପାତ୍ରଟିଏ ମୁଁ ଯୋଗାଡ଼ କରିପାରି ନାହିଁ । ଏଣୁ ପ୍ରତିଜ୍ଞା କରିଛି, ଯିଏ ମୋର କନ୍ୟାକୁ ବିବାହ କରିବ, ମୁଁ ତା'କୁ ସମସ୍ତ ଧାନ ଯୌତୁକ ରୂପେ ଦାନ କରିଦେବି ।''

ନାରଦ ଏହାଶୁଣି ଆଶ୍ଚର୍ଯ୍ୟ । ନହୁଷ ରାଜାଙ୍କ ରାଜ୍ୟକୁ ଧାନ ତେବେ ଯିବ କିପରି ? ସେ କିଛି ଠିକଣା କରିନପାରି ଫେରି ଗଲେ । ଅମ୍ବିକା ନିକଟରେ ଧାନ ଥିବା ବିଷୟ ବ୍ରହ୍ମାକୁ ଜଣାଇଲେ । ବ୍ରହ୍ମା ଏହାଶୁଣି ବଶିଷ୍ଠଙ୍କୁ ଡକାଇ କହିଲେ - ''ସଙ୍ଗେ ସଙ୍ଗେ କେଉଁଠୁ ଧାନ ମିଳିବ, ତାହା ନାରଦ ଠାବ କରି ଆସିଛନ୍ତି । ରାଜା ନହୁଷଙ୍କୁ କୁହ, ସେ ସିଂହଳ ଦ୍ୱୀପର ଅମ୍ବିକା ନିକଟକୁ ଯାଆନ୍ତୁ । ତା'ଠାରୁ ଧାନ ଆଣି ପ୍ରଜାମାନଙ୍କ ଜୀବନ ରକ୍ଷା କରନ୍ତୁ ।''

ବଶିଷ୍ଠ ନହୁଷ ରାଜାଙ୍କୁ ଏହା ଜଣାଇ ଦେଲେ । ରାଜା ଧାନ ପାଇବା ଆଶାରେ ଆନନ୍ଦିତ ହୋଇ ସଦଳ ବଳେ ସିଂହଳ ଦ୍ୱୀପକୁ ଗଲେ । ପୁଣ୍ୟତୋୟା ନଦୀତୀରରେ ପହଞ୍ଚିଲେ । ଅମ୍ବିକାକୁ ଡକାଇ ପଠାଇଲେ । ସେ ଆସିବାରୁ ରାଜା କହିଲେ - ‘‘ଅମ୍ବିକା, ଅପାଳକ ହେବା ଫଳରେ ମୋ ରାଜ୍ୟର ଲୋକେ ଏବେ ଭୋକରେ ଅସ୍ଥିର ହୋଇପଡିଛନ୍ତି । ତୁମର ଧାନତକ ଆଉ ବିଳମ୍ବ ନକରି ମୋତେ ଦେଇଦିଅ ।’’

ଅମ୍ବିକା କହିଲା — ‘‘ମହାରାଜ ! ଆପଣ ତ ରାଜ ଚକ୍ରବର୍ତ୍ତୀ, ବହୁ ଶକ୍ତିର ଅଧିକାରୀ । ଆପଣଙ୍କ କାମ ଧର୍ମ ରକ୍ଷା କରିବା । ପୁଣି ଆପଣ ସୋମ ବଂଶର ରାଜା । ମୋର ବିଶ୍ୱାସ, ଆପଣ କେବେ ହେଲେ ଅନୀତି କରିବେ ନାହିଁ । ଶକ୍ତିମାନ ହେଲେ ହେଁ ଆପଣ କେବେ ମୋର ଧାନ ଜୋର୍ କରି ନେବେ ନାହିଁ ।’’

ରାଜା କହିଲେ — ‘‘ନା, ମୁଁ ବଳପୂର୍ବକ ତୁମ ଧାନ ନେବା ଲାଗି ଏଠାକୁ ଆସିନାହିଁ । ତୁମଠାରୁ ଧାନ ନେଇ ମୁଁ ଯଥାସମୟରେ ତାହା ପରିଶୋଧ କରିଦେବି ।’’

ଅମ୍ବିକା କହିଲା —‘‘ଆଜ୍ଞା, ଆପଣ ଯେବେ ମୋ’ଠାରୁ ଧାନ ନେବାକୁ ଚାହାନ୍ତି, ତେବେ ମୋର ସର୍ତ୍ତ ଶୁଣନ୍ତୁ । ରୂପ ଗୁଣସଂପନ୍ନା ମୋର ଝିଅଟିଏ ଅଛି । ସେ ବାହା ହୋଇ ନାହିଁ । ତାକୁ ଯିଏ ବିଭା ହେବ, ମୁଁ ତାକୁ ମୋର ସମସ୍ତ ଧାନ ଯୌତୁକ ରୂପେ ପ୍ରଦାନ କରିବି । ତା’ ନୋହିଲେ ମୁଁ କାହାକୁ ଧାନ ଦେବି ନାହିଁ ବୋଲି ସଂକଳ୍ପ କରିଛି ।’’

ରାଜା ଏପରି ସର୍ତ୍ତ ବିଷୟ ଶୁଣି କାନରେ ହାତ ଦେଲେ । ଅସ୍ପୃଶ୍ୟା କନ୍ୟାକୁ ସେ କିପରି ବା ବିବାହ କରିବେ ? ମନ ଦୁଃଖରେ ସେ ଆପଣା ଦେଶକୁ ଫେରିଆସି ବଶିଷ୍ଠଙ୍କୁ କହିଲେ "- ଆଜ୍ଞା ! ପ୍ରକୃତରେ ଅମ୍ବିକାର ବହୁତ ଧାନ ଅଛି । ଆହୁରି କେତେକାଳ ଅପାଳକ ହେଲେ ବି ମୋ ରାଜ୍ୟର ଲୋକେ ସେଇ ଧାନରେ ଚଳିଯିବେ । ମାତ୍ର ତା' ଝିଅକୁ ବିବାହ କଲେ ସେ ଧାନଦେବ ବୋଲି ପ୍ରତିଜ୍ଞା କରିଛି । ରାଜ ଧର୍ମ ଦୃଷ୍ଟିରୁ ଏହା ବା କିପରି ସମ୍ଭବ ହେବ ? ଏତେ ବଡ଼ ସୋମ ବଂଶକୁ ମୁଁ ଜାଣୁ ଜାଣୁ କିପରି ବା କଳୁଷିତ କରିବି ?"

ବଶିଷ୍ଠ କହିଲେ - "ହଁ, ତାହା ତ ଠିକ୍ । ରାଜା ହୋଇ ନିଜ ବଂଶକୁ କଳଙ୍କିତ କରିବାଠାରୁ ଆଉ ବଡ଼ ଅପରାଧ ନାହିଁ । କିନ୍ତୁ ପ୍ରଜାମାନଙ୍କ ଜୀବନ ରକ୍ଷା ମଧ୍ୟ କ୍ଷତ୍ରିୟର ପ୍ରଧାନ ଧର୍ମ । ଯାହା ହେଉ, ତୁମେ ଅପେକ୍ଷା କର । ଏ ବିଷୟରେ କ'ଣ କରାଯିବ, ତାହା ବ୍ରହ୍ମାଙ୍କୁ ପଚାରି ମୁଁ ଅବିଳମ୍ବେ ତୁମକୁ ଜଣାଇବି ।"

ଏହା କହି ବଶିଷ୍ଠ ବ୍ରହ୍ମାଙ୍କ ନିକଟକୁ ଗଲେ । ତାଙ୍କୁ ସମସ୍ତ ବିଷୟ ଜଣାଇଲେ । ବ୍ରହ୍ମା କହିଲେ - "ବଶିଷ୍ଠ ! ତୁମେ ମଧ୍ୟ ଥରେ ଅମ୍ବିକା ନିକଟକୁ ଯାଇ ଚେଷ୍ଟା କର । ତୁମେ ବ୍ରହ୍ମ ଜ୍ଞାନୀ । ତୁମର ସମ୍ମାନ, ସଂଭ୍ରମ ରକ୍ଷା କରି ହୁଏତ ଅମ୍ବିକା ଧାନ ଦେବାକୁ ରାଜି ହୋଇପାରେ ।"

ବଶିଷ୍ଠ ବାଧ ହୋଇ ଅମ୍ବିକା ନିକଟରେ ପହଞ୍ଚିଲେ । ତାକୁ କହିଲେ- "ଦେଖ୍ ବାବୁ ଅମ୍ବିକା, ଧର୍ମରେ ଚଳୁଥିବା ଯୋଗୁଁ ତୋର ବହୁ ପୁଣ୍ୟ ହୋଇଗଲାଣି । ଶାସ୍ତ୍ରରେ ଅଛି - କ୍ଷୁଧାର୍ତ୍ତକୁ ଅନ୍ନଦାନ କଲେ କୋଟି ସୁବର୍ଣ୍ଣ ମୁଦ୍ରା ଦାନରୁ ଅଧିକ ପୁଣ୍ୟ ମିଳିଥାଏ । ଦେଶର ଭୋକିଲା ପ୍ରଜାଙ୍କ

ଲାଗି ତୁ ଧାନ ଦେଲେ, ନିଶ୍ଚୟ ବୈକୁଣ୍ଠରେ ବସିବୁ । ଏଣୁ ବହୁ ଲୋକଙ୍କ ମଙ୍ଗଳ ଓ ନିଜର ମଙ୍ଗଳ ଲାଗି ଆଉ ବିଳମ୍ୱ ନକରି ମୋତେ ତୋ'ର ଧାନତକ ଦେଇଦେ ।''

ଅମ୍ୱିକା କହିଲା - ''ହେ ବ୍ରାହ୍ମଣ ଗୋସାଇଁ, ମୁଁ ଜଣେ ମୂର୍ଖ ଅଛବ ଲୋକ । ଶାସ୍ତ୍ର ବା ଧର୍ମ ବିଷୟରେ ମୁଁ କିଛି ଜାଣେ ନାହିଁ । ଜ୍ଞାନୀଙ୍କ ଭଳି କହିବା ମଧ ମୋତେ ଜଣାନାହିଁ । ପିତା ଭାବରେ କନ୍ୟାଟିକୁ ସୁପାତ୍ରରେ ଦେବାକୁ ହିଁ ମୁଁ ମୋର ଧର୍ମ ମନେ କରିଛି । ଅନ୍ୟାୟ କରିତ ମୁଁ ଏ ଧାନ ଅର୍ଜି ନାହିଁ । ନିଜେ ପରିଶ୍ରମ କରି ଧାନ କମେଇଛି । ତେଣୁ ପ୍ରତିଜ୍ଞା କରିଛି, ଯିଏ ମୋ କନ୍ୟାକୁ ବିବାହ କରିବ, ତାକୁ ହିଁ ସମସ୍ତ ଧାନ ଯୌତୁକ ରୂପେ ଦେଇଦେବି । ଯାହାର ଇଚ୍ଛା ସେ କନ୍ୟା ଓ ଧାନ ନେଇ ଧର୍ମ କରୁ ବା ସ୍ୱର୍ଗକୁ ଯାଉ । ତାହା ନୋହିଲେ ମୁଁ ଏ ଧାନକୁ କେବଳ ଦାନ ଭାବରେ ଦେବାକୁ ଚାହେଁ ନାହିଁ ।''

ବଶିଷ୍ଠ ପୁଣି ବ୍ରହ୍ମାଙ୍କ ନିକଟକୁ ଗଲେ ଓ ଅମ୍ୱିକା ତାଙ୍କୁ ମଧ କିପରି ନିରାଶ କରିଛି, ତାହା ଜଣାଇଲେ । ତହୁଁ ବ୍ରହ୍ମା କହିଲେ - ''ବଶିଷ୍ଠ ! ତୁମେ ସିନା ବ୍ରହ୍ମଜ୍ଞାନୀ ଭାବି ଅମ୍ୱିକାକୁ ଛୋଟ ମନେ କରୁଛ । ମାତ୍ର ଅମ୍ୱିକା ଠିକ୍ କହିଛି । ତୁମକୁ ହିଁ ତା'ର ସର୍ତ୍ତ ରକ୍ଷା କରିବାକୁ ପଡିବ । ରାଜା ନିଜେ ଅସମର୍ଥ ହେବାରୁ ତୁମର ସାହାଯ୍ୟ ଲୋଡିଲେ । ତୁମେ ବ୍ରାହ୍ମଣ, ପୁଣି ରାଜ ପୁରୋହିତ । ରାଜାଙ୍କ ପୁରର ତଥା ରାଜ୍ୟର ମଙ୍ଗଳ ତୁମେ ନ କରିବ ତ ଆଉ କରିବ କିଏ ? ତୁମେ ହିଁ ସେହି ଚଣ୍ଡାଳର କନ୍ୟାକୁ ବିବାହ କରି ତା'ର ଧାନ ଆଣି ରାଜ୍ୟ ରକ୍ଷା କର । ନହୁଷ ଦେଶବାସୀଙ୍କର ଦୁଃଖ ଦୂର ହେଉ ।''

ସ୍ୱୟଂ ବ୍ରହ୍ମାଙ୍କର ଏହି ନିର୍ଦ୍ଦେଶ । ଚଣ୍ଡାଳ କନ୍ୟା ସହ ବ୍ରାହ୍ମଣର ବିବାହକୁ ବ୍ରହ୍ମା ସମର୍ଥନ କରିଛନ୍ତି । ଏଥିପାଇଁ ଆଉ ଚିନ୍ତା କରିବା ଅନାବଶ୍ୟକ। ବଶିଷ୍ଠ ପିତାମହ ବ୍ରହ୍ମାଙ୍କ ଆଦେଶ କ୍ରମେ ଚଣ୍ଡାଳ କନ୍ୟାକୁ ବିବାହ କରିବା ପାଇଁ ବାହାରିଲେ। ମାର୍କଣ୍ଡେୟ, ପୌଲେସ୍ତ୍ୟ, ବାଲ୍ମୀକି, ଅଗସ୍ତି, ବିଭାଣ୍ଡକ, ବିଶ୍ୱାମିତ୍ର, ବ୍ୟାସ ପ୍ରଭୃତି ମୁନିଋଷି ମଧ୍ୟ ତାଙ୍କର ସହଯାତ୍ରୀ ହେଲେ । ସେମାନେ ଯାଇ ଅମ୍ବିକା ଦ୍ୱାରରେ ଯଥାବିଧି ପହଞ୍ଚିଲେ ।

କନ୍ୟାକୁ ବିବାହ କରିବା ଲାଗି ସ୍ୱୟଂ ବଶିଷ୍ଠ ମୁନି ଋଷିଙ୍କ ସହ ଆସିଛନ୍ତି । ଏଥିପାଇଁ ଅମ୍ବିକାର ଆନନ୍ଦ କହିଲେ ନ ସରେ । ସେ ଗୃହ ସଜ୍ଜା ଓ ଅତିଥି ଚରଚାରେ ଲାଗିଲା । ଶୁଭ ଲଗ୍ନରେ ବିବାହ ଆରମ୍ଭ ହେଲା । ଅମ୍ବିକା, ଝିଅ ଅରୁନ୍ଧତୀକୁ ବେଦୀ ଉପରକୁ ଆଣିଲା । ପଦ୍ମିନୀ ଜାତୀୟା କନ୍ୟା ଅରୁନ୍ଧତୀର ରୂପ ଦେଖି ସମସ୍ତେ ଖୁସି ହେଲେ । ଶୁଭ ଲଗ୍ନରେ ବଶିଷ୍ଠ ଓ ଚଣ୍ଡାଳ କନ୍ୟା ଅରୁନ୍ଧତୀର ହାତଗଣ୍ଠି ପଡ଼ିଲା । ଶଙ୍ଖ, ହୁଳହୁଳି ଓ ଜୟ ଜୟ ମଙ୍ଗଳ ଧ୍ୱନିରେ ପୁର ଉଚ୍ଛୁଳି ପଡ଼ିଲା । ଅମ୍ବିକା ତିଳୋଜଳ ପୂର୍ଣ୍ଣ ଶଙ୍ଖ ଧରି ତା'ର ସମସ୍ତ ଧାନକୁ ଯୌତୁକ ରୂପେ ଅର୍ପଣ କଲା । ବିବାହ କାର୍ଯ୍ୟ ଶେଷ ହେଲା । ବଶିଷ୍ଠ ନବବଧୂ ଅରୁନ୍ଧତୀ ଓ ବିପୁଳ ଧାନକୁ ନେଇ ନହୁଷ ଦେଶକୁ ବାହୁଡିଲେ । ଗ୍ରାମେ ଗ୍ରାମେ ଭୋକିଲା ଲୋକଙ୍କ ମଧ୍ୟରେ ଧାନକୁ ବାଣ୍ଟିଦେବା ଲାଗି ନହୁଷଙ୍କୁ ସମସ୍ତ ଧାନ ଦେଲେ । ଲୋକେ ଏହା ପାଇ ଧନ୍ୟ ଧନ୍ୟ କରିବାକୁ ଲାଗିଲେ । ଅରୁନ୍ଧତୀଙ୍କ ଲାଗି ସେମାନଙ୍କ ଜୀବନ ରକ୍ଷା ହେଲା । ଏଣୁ ସେମାନେ ଅରୁନ୍ଧତୀଙ୍କୁ ଆଶୀର୍ବାଦ କଲେ ।

ତାଙ୍କ ମହାଭାରତର ଆଉ ଗୋଟିଏ କାହାଣୀ ହେଉଛି 'ବେଲାଳସେନ କଥା' - ଏହା ମଧ୍ୟ କବିଙ୍କର ଏକ ଚମତ୍କାର କଳ୍ପନା ।

**ବେଲାଳସେନ କଥା :**

ବେଲାଳସେନ ହେଉଛି ଭୀମଙ୍କର ପୁଅ । ତା'ର ମାଆ ହେଉଛି ନାଗମାନଙ୍କ ରାଜା ବାସୁକୀଙ୍କ ଝିଅ ବେଲାବାଳୀ । ବେଲାଳସେନ ଥିଲା ମହାବଳଶାଳୀ । କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ଯୁଦ୍ଧ ହେବା ସ୍ଥିର ହୋଇଗଲା । ପାଣ୍ଡବମାନଙ୍କୁ ସାହାଯ୍ୟ କରିବା ପାଇଁ ଭୀମ ଆପଣାର ପୁତ୍ର ବେଲାଳସେନଙ୍କୁ ସ୍ମରଣ କଲେ । ବେଲାଳସେନ ଆସି ପାଣ୍ଡବଙ୍କ ଶିବିରରେ ପହଞ୍ଚିଲା । ସେ କିପରି ବୀର ଓ ଯୁଦ୍ଧ କରିବାକୁ ସମର୍ଥ ଏହା ପରୀକ୍ଷା କରିବାକୁ ଶ୍ରୀକୃଷ୍ଣ ଇଚ୍ଛା କଲେ । ସେ ବେଲାଳସେନର ଗୋଟିଏ ଶରରେ ସିନ୍ଦୂର ଚିହ୍ନ ଦେଲେ । ତାକୁ କହିଲେ - ''ଆରେ ବାବୁ ! କୌରବ ସୈନ୍ୟମାନଙ୍କ କପାଳରେ ଏଇ ସିନ୍ଦୂର ଚିହ୍ନ ଲଗାଇ ଦେଇ ପାରିବ ?''

ବେଲାଳସେନ ସଙ୍ଗେ ସଙ୍ଗେ ଶରକୁ ମନ୍ତ୍ର କଲା । ଧନୁରେ ରଖି ତାକୁ କୁରୁକ୍ଷେତ୍ର ଯୁଦ୍ଧ ଭୂମି ଆଡକୁ ନିକ୍ଷେପ କଲା । ମୁହୂର୍ତ୍ତକ ପରେ ଦେଖାଗଲା କେବଳ କୌରବ ସୈନ୍ୟମାନଙ୍କ କପାଳରେ ସିନ୍ଦୂର ଲାଗିଛି । ବେଲାଳସେନର ଏପରି ତୀର ଚାଳନା ଦେଖି ଶ୍ରୀକୃଷ୍ଣ ଆଶ୍ଚର୍ଯ୍ୟ ହେଲେ । ସେ ପୁଣି ତା'ର ଶକ୍ତି ପରୀକ୍ଷା କରିବାକୁ ଚାହିଁଲେ । ତାକୁ କହିଲେ - ''ଆଚ୍ଛା, ମୁଁ ତୋ ଶର ଚାଳନା ଦେଖି ଖୁସି ହେଲି । ତେବେ ଆଉ ଗୋଟିଏ କାମ କରି ପାରିବୁ ? ମୁଁ ଏବେ ସଙ୍ଗେ ସଙ୍ଗେ ଅନ୍ତର୍ହିତ ହୋଇଯିବି । ଶର ମାରି ମୋତେ ଏଠାକୁ ଆଣି ପାରିବୁ କି ?''

ବେଲାଲସେନ କହିଲା - ''ହଁ, ମୁଁ ଏହା କରି ପାରିବି ।'' ତହୁଁ ଶ୍ରୀକୃଷ୍ଣ ସୂକ୍ଷ୍ମ ରୂପରେ ବେଲାଲସେନର କାଣି ଆଙ୍ଗୁଠିରେ ଲୁଚି ରହିଲେ । ବେଲାଲସେନ ଶର ମାରି ତାଙ୍କୁ କାଣି ଆଙ୍ଗୁଠି ନଖ ମଧ୍ୟରୁ କାଢ଼ିଆଣିଲା । ଏଇ ପରୀକ୍ଷାରେ ସେ ସଫଳ ହେଲା । ଏପରି ଅସମ୍ଭବକୁ ସମ୍ଭବ କରିବା ଦେଖି ଶ୍ରୀକୃଷ୍ଣ ଘୋର ଅଡୁଆରେ ପଡିଗଲେ । ଜାଣି ପାରିଲେ, ବେଲାଲସେନ ସବୁଠାରୁ ବଳୁଆ । ଶର ଚଳେଇ ମୁହୂର୍ତ୍ତକ ମଧ୍ୟରେ ସେ ମହାଭାରତ ଯୁଦ୍ଧକୁ ଶେଷ କରି ଦେବ । ତା' ହେଲେ ଏଇ ଯୁଦ୍ଧର ଅସଲ ଉଦ୍ଦେଶ୍ୟ ସଫଳ ହୋଇପାରିବ ନାହିଁ । ଏଣୁ ସେ ବେଲାଲସେନକୁ କହିଲେ - ''ଆରେ ପୁଅ ! ତୋ'ର ଶକ୍ତି ନିଶ୍ଚୟ ସମସ୍ତଙ୍କଠାରୁ ଅଧିକ । ମୁଁ ତୋ'ଠାରୁ ଆଉ କିଛି ଆଶା କରୁଛି ।''

ବେଲାଲସେନ କହିଲା - ''ମୁଁ ସତ୍ୟ କରୁଛି; ଯାହା ଚାହିଁବେ ତାହା ଆପଣଙ୍କୁ ଦେଇ ଦେବି ।''

ଶ୍ରୀକୃଷ୍ଣ କହିଲେ - ''ଆରେ ବାବୁ, ମୁଁ ତୋ ଠାରୁ କିଛି ମାଗୁନି । କେବଳ ତୋର 'ଶିର-କମଳ'ଟି ମାଗୁଛି ।''

ବେଲାଲସେନ ଏଥିରେ ବିଚଳିତ ନ ହୋଇ କହିଲା - ''ମୁଁ କ୍ଷତ୍ରିୟ । କାହାରିକୁ ମୁଁ ଭୟ କରେ ନାହିଁ । ମୃତ୍ୟୁକୁ ମଧ୍ୟ ନୁହେଁ । ସଙ୍ଗେ ସଙ୍ଗେ ମୁଁ ମୋ ଶିରକୁ ଆପଣଙ୍କୁ ଭେଟି ଦେଇଦେବି । ମାତ୍ର ମୋର ଗୋଟିଏ ପ୍ରାର୍ଥନା । ଯେଉଁଥିପାଇଁ ମୋତେ ଏଠାକୁ ଡକା ହୋଇଥିଲା, ସେଇ ମହାଭାରତ ଯୁଦ୍ଧ ମୁଁ ମୂଳରୁ ଶେଷ ପର୍ଯ୍ୟନ୍ତ ଦେଖିବାକୁ ଚାହେଁ । ଆପଣ ମୋ ପ୍ରତି ଏତିକି ଦୟା କରନ୍ତୁ ।''

ଶ୍ରୀକୃଷ୍ଣ ଖୁସି ହୋଇ କହିଲେ, - ''ହଁ, ତାହା ହିଁ ହେବ । ସେ ତାକୁ ଦିବ୍ୟ ଚକ୍ଷୁ ଦାନ କଲେ । ତା'ର ଛିନ୍ନ ମସ୍ତକକୁ ଯୁଦ୍ଧ କ୍ଷେତ୍ରରେ ଥିବା ଶୁଭ ସ୍ତମ୍ଭ ଉପରେ ରଖାଇଲେ । ସେଇ ଛିନ୍ନ ମସ୍ତକଟି ସେହିପରି ରହିଲା । ଏକ ମାତ୍ର ସିଏ ହିଁ ମହାଭାରତ ଯୁଦ୍ଧର ଭୟଙ୍କର ଦୃଶ୍ୟ ମୂଳରୁ ଶେଷ ପର୍ଯ୍ୟନ୍ତ ଦେଖି ପାରିଥିଲା । ଯୁଦ୍ଧ ଶେଷ ହେଲା । ପାଣ୍ଡବମାନେ ଜିତିଲେ । ଏହାପରେ ପାଣ୍ଡବ ଭାଇମାନେ ପ୍ରତ୍ୟେକେ କହିଲେ - ''ମୋ ଯୋଗୁ ହିଁ ଏହି ଯୁଦ୍ଧ ଶୀଘ୍ର ଶେଷ ହେଲା । ମୁଁ ଲଢ଼ି ନଥିଲେ ଏହା ହୋଇପାରି ନଥାନ୍ତା । ଏତେ ସୈନ୍ୟ ମରି ନଥାନ୍ତେ ।''

ଶ୍ରୀକୃଷ୍ଣ ଭାଇମାନଙ୍କ କଥା ଚୁପ୍ ଚାପ୍ ଶୁଣିଲେ । ସେମାନଙ୍କୁ ଯୁଦ୍ଧ ଭୂମିର ଶୁଭସ୍ତମ୍ଭ ନିକଟକୁ ନେଇଗଲେ । ବେଲାଳସେନର ଛିନ୍ନ ମସ୍ତକକୁ ପଚରାଗଲା - ''କିଏ ଯୁଦ୍ଧରେ ଅଧିକ ସୈନ୍ୟ ମାରିଛି, କୁହ ?''

ସେ କହିଲା - ''କିଏ କେତେ ସୈନ୍ୟ ମାରିଛି, ଏହା ମୁଁ ଠିକ୍ ଭାବେ ଜାଣି ପାରିଲି ନାହିଁ । କେବଳ ଏତିକି ଦେଖିଛି, ଚକ୍ରଟିଏ ଉଭୟ ପଟ ସୈନ୍ୟକୁ ମାରୁଥିଲା ।''

''କେ କାହାକଇ ମାରିଲା ଜାଣି ନୁଆରିଲି
ମାତ୍ର ଏକ କଥା ଦିବ୍ୟ ନୟନେ ଦେଖିଲି ।
ପାଣ୍ଡବ ଥାଠୁଁ ଚକ୍ରେ ହୁଅଇ ବାହାର
କୋଟିଏ ସୂର୍ଯ୍ୟ ଜିଣି ତେଜ ଅଟଇ ତାହାର ।
କଉରବ ସଇନିକ ସେ କରଇ ଦହନ
ସେ ସୈନ୍ୟରୁ ଚକ୍ରେ ପୁଣି ହୁଅଇ ଉତପନ୍ନ ।

ପାଣ୍ଡବ ସଇନିକ ସେ କରଇ ଛେଦନ
ଏଥୁଁ ଆନ ମୁଁ ଦେଖି ନାହିଁ ଭଗବାନ ।''

ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ସବୁ କରି କରାଉଛନ୍ତି । ଏହାହିଁ ଥିଲା ବେଲାଳସେନ କଥାର ମର୍ମ ।

**ଯୁଧିଷ୍ଠିର ଓ ସୁହାଣୀ କନ୍ୟା :**

କବିଙ୍କର ବିଚିତ୍ର କଳ୍ପନାର ପରିଚୟ ମଧ୍ୟ ମିଳିଥାଏ ଯୁଧିଷ୍ଠିରଙ୍କ ସହ ସୁହାଣୀ କନ୍ୟାର ବିବାହ ବିଷୟରୁ । ସ୍ୱର୍ଗକୁ ଯିବା ପୂର୍ବରୁ ଯୁଧିଷ୍ଠିର ସ୍ତ୍ରୀ ଓ ଭାଇମାନଙ୍କ ସହିତ ତୀର୍ଥ କରିବା ଲାଗି ବାହାରିଲେ । ସେମାନେ ଆସି ପହଞ୍ଚିଲେ ବୈତରଣୀ କୂଳ ଯାଜପୁରରେ । ଏହାରି ପାଖରେ ଅମରାବତୀ କଟକ । ସେଇଠି ଥିଲା ବୈଶ୍ୟ ହରି ସାହୁର ଘର । ତା'ର ଥିଲା ସୁନ୍ଦରୀ ଝିଅଟିଏ । ତା' ନାଁ ସୁହାଣୀ । ଦୁର୍ଭାଗ୍ୟର ବିଷୟ, ଜ୍ୟୋତିଷମାନେ ତା'ର ଜାତକ ଗଣନା କରି କହିଲେ - ''ଏହାକୁ ବିବାହ ଦେବା ମାତ୍ରେ ଇଏ ମରିଯିବ ।''

ଏଣୁ ହରିସାହୁ ମହା ଚିନ୍ତାରେ ପଡିଥାଏ । ଝିଅକୁ ବାହାଦେବା ଲାଗି ସାହସ କରିପାରୁ ନଥାଏ । ଜାଣୁ ଜାଣୁ କିପରି ବା ଝିଅକୁ ମରଣ ମୁହଁକୁ ଠେଲି ଦେବ ? ଯୁଧିଷ୍ଠିରଙ୍କ ଭଳି ଜଣେ ଧାର୍ମିକ ଲୋକଙ୍କୁ ଦେଖି ସେ ସ୍ଥିର କଲା - ମୁଁ ଏହାଙ୍କ ସଙ୍ଗେ ଝିଅକୁ ବାହା କରିଦେବି । ତେଣିକି ତା' କପାଳରେ ଯାହା ଥିବ । ଏହା ଭାବି ସେ ଯାଇ ଯୁଧିଷ୍ଠିରଙ୍କୁ ସବୁ କଥା କହିଲା । ଶରଣ ନେବା ଲୋକକୁ ରକ୍ଷା କରିବା କ୍ଷତ୍ରିୟର କାମ । ଯୁଧିଷ୍ଠିର ଭାଇମାନଙ୍କ ମତ ଲୋଡିଲେ । ସେମାନେ ଏଥିରେ ରାଜି

ହେଲେ । ହତଭାଗିନୀ ସୁହାଣୀ କନ୍ୟା ସହ ଯୁଧିଷ୍ଠିରଙ୍କ ବିବାହ ହୋଇଗଲା । ସଙ୍ଗେ ସଙ୍ଗେ ସୁହାଣୀର ପ୍ରାଣ ନେବା ଲାଗି ଯମରାଜ ଆସି ସେଠାରେ ପହଞ୍ଚିଗଲେ । ମାତ୍ର ଅର୍ଜ୍ଜୁନ ଶର ମାରି ଯମଙ୍କୁ ବନ୍ଦୀ କରିଦେଲେ । ସୁହାଣୀକୁ ସେ ଆଉ ନେଇ ପାରିଲେ ନାହିଁ । ହରି ସାହୁ ଯୁଧିଷ୍ଠିରଙ୍କୁ ଅନୁରୋଧ କରି କହିଲା - ''ଯମ ଦେବତାକୁ ଛାଡ଼ି ଦିଅ ।'' ଯମ ଛାଡ ପାଇଲେ । ଯମ କହିଲେ - ''ଏହି ସ୍ଥାନର ନାମ ଅମରାବତୀ ହେବ ।''

ଯୁଧିଷ୍ଠିର ସୁହାଣୀ ସହ ସେଠାରେ କେତେ ବର୍ଷ କଟାଇଲେ । ଏହାପରେ ସେ ସେଠାରୁ କପିଳାସକୁ ଗଲେ । କପିଳାସର ଶିଖରେଶ୍ୱର ଶିବଙ୍କ ସେବାରେ ସୁହାଣୀକୁ ନିୟୋଜିତ କଲେ । ଏହାପରେ ସେ ଦ୍ରୌପଦୀ ଓ ଭାଇମାନଙ୍କୁ ନେଇ ଅନ୍ୟ ତୀର୍ଥ ସବୁ ବୁଲି ସ୍ୱର୍ଗକୁ ଯାଇଥିଲେ ।

ସଂସ୍କୃତ ମହାଭାରତରେ ଶେଷ କଥା ହେଉଛି ସାଂସାରିକ ଜଂଜାଳରୁ ମୁକ୍ତି ବା ବୈରାଗ୍ୟ । ସାରଳା ଦାସଙ୍କ ମହାଭାରତର ମଧ ଏହାହିଁ ଶେଷ କଥା । ଲୋଭ, ମୋହ, ହିଂସା, ଈର୍ଷା, କପଟତା, ଅନ୍ୟକୁ କଷ୍ଟ ଦେବା ପ୍ରଭୃତି ଯୋଗୁଁ ଶେଷରେ ଦୁଃଖ ହିଁ ମିଳିଥାଏ । ସାରଳା ଦାସ ଏହାକୁ ସୁନ୍ଦର ଭାବେ ଦର୍ଶାଇଛନ୍ତି । ମହାଭାରତ ଯୁଦ୍ଧ ଶେଷ ହୋଇଗଲା । ଦୁର୍ଯ୍ୟୋଧନ ପକ୍ଷର ସମସ୍ତେ ଯୁଦ୍ଧ କ୍ଷେତ୍ରରେ ମରି ଶୋଇଲେ । ଯୁଦ୍ଧ କ୍ଷେତ୍ରରେ ରକ୍ତର ନଦୀ ବୋହିଲା । ଏକମାତ୍ର ଦୁର୍ଯ୍ୟୋଧନ କୌଣସି ମତେ ବଞ୍ଚି ଯାଇଥାଏ । ସଂଧ୍ୟା ହେବାରୁ ଯୁଦ୍ଧ ବନ୍ଦ ହେଲା । ରାତି ଆସିଲା । ନିଜ ପ୍ରାଣ ରକ୍ଷା କରିବା ଲାଗି ସେ ସେଇ

ରକ୍ତ ସ୍ରୋତରେ ଗୋଟିଏ ଶବକୁ ଧରି ଭାସି ଚାଲିଲା । କିଛି ସମୟ ପରେ ନିରେଖି ଦେଖିବାରୁ ସେ ଶବଟିକୁ ଚିହ୍ନି ପାରିଲା ।

''ବୁଲାଇ ତା' ମୁଖ ନିରେଖଇ କୁରୁରାଣ
ଚିହ୍ନିଲା ସେ ଅଟେ ନିଜ କୁମାର ଲକ୍ଷ୍ମଣ ।
ହା ହା ପୁତ୍ର ବୋଲି ରାୟେ ଲଗାଇଲା ହୃଦେ
ଅତ୍ୟନ୍ତ ବିକଳ ହୋଇ ଅତି ଉଚ୍ଚେ କାନ୍ଦେ ।''

ଏହାପରେ ମୃତ ପୁତ୍ରର ରୂପ ଗୁଣ ପ୍ରଭୃତି ସ୍ମରଣ କରି ସେ ବହୁତ ଶୋଚନା କରିଛି । ଏହା ପଢ଼ିଲେ ପଢ଼ିବା ଲୋକର ଆଖି ଲୁହ ଛଳ ଛଳ ହୋଇଯିବ । ଏହା ସାରଳା ଦାସଙ୍କର ଅପୂର୍ବ କବି କର୍ମ । ସଂସ୍କୃତ ମହାଭାରତରେ ଏହି ପ୍ରସଙ୍ଗ ଏପରି ବର୍ଣ୍ଣନା କରାଯାଇ ନାହିଁ । ଆପଣାର ପୂର୍ବ କାର୍ଯ୍ୟ ପାଇଁ ସେ ଶୋଚନା କରିଛି । ଏହାର ବିଫଳତା ବୁଝି ପାରି କହିଛି -

''ଆଜ ହୁଁ ବିଫଳ ହେଲା ମୋର ସବୁ କର୍ମ ।
* * * * * *
ଜନ୍ମଠାରୁ ଆଜ ଯାଏ ଚାହିଁ ତୋ'ର ମୁଖ
ବଞ୍ଚିଥିଲି ଏବେ ମୁହିଁ ହୋଇଛି ନିରେଖ ।
ପାଟ ପତନୀରେ ଦିଶୁଥିଲୁ ତୁ ସୁରଙ୍ଗ
ରକତରେ ଏବେ ଧୂଆ ହେଲା ତୋ ଶ୍ରୀଅଙ୍ଗ ।
ବାରସ୍ୱତମ ପୁର ପ୍ରାୟେ ତୋର ପୁର ଗୋଟି
ତାହା ଉପେକ୍ଷିଣ ଏବେ ଏଥେ ଅଛୁ ଲୋଟି ।

ମୋହ ପରା ପିତା ତୋର କେବେ ହେଁ ନ ହେଉ
ତୋ ପରା ପୁତ୍ର ମୋ ଜନ୍ମେ ଜନ୍ମେ ହେଉଥାଉ ।''

ସେହି ରକ୍ତ ନଦୀ ପାର ହେବା ପରେ ଦୁର୍ଯ୍ୟୋଧନ ଯାଇ ବ୍ୟାସ ସରୋବରରେ ଲୁଚି ରହିଛି । ସେଠାରେ ଅବଶେଷରେ ତା'ର ମୃତ୍ୟୁ ହୋଇଅଛି ।

ସାରଳାଙ୍କ ପୁରାଣ ବହୁ ନୀତି ବାକ୍ୟର ଭଣ୍ଡାର । ଏଗୁଡିକରେ କବି ମଣିଷମାନଙ୍କର କୂଟ କପଟତାକୁ ମଧ ଠାଏ ଠାଏ କଟାକ୍ଷ କରିଛନ୍ତି । ଯଥା -

''ପରକଇ ବଦ୍ୟ ଆପଣେ ହୋଇ ରୋଗୀ
ଦାରାଯେ ପ୍ରମତ୍ତ ହୋଇ କିସ ବୋଲାଉ ଯୋଗୀ ।''

ସେହିପରି ଆଧିକ୍ୟ ଯୋଗୁ ବିପଦ ଓ ଅସୁବିଧା ହୋଇଥାଏ । ଏହା ମଧ ବିନାଶର କାରଣ । ଏ ବିଷୟରେ ଅବହିତ ହେବା ଲାଗି ସାରଳା ଦାସ ଲେଖିଛନ୍ତି -

''ଅପାର ଔଷଧରେ ନ ବର୍ତ୍ତଇ ରୋଗୀ
ଅପାର ଅନ୍ନ ଖାଇଲେ ନାଶ ଯାଇ ଭୋଗୀ ।
ଅପାର କୁଟୁମ୍ବେ କ୍ରୋଧ ହୋଇ ଅପାରଇ
ଅପାର ପ୍ରତିଗ୍ରହେ ବ୍ରାହ୍ମଣ ନାଶ ଯାଇ ।
* * * * *
ଅପାର ଲୋକରେ ଇନ୍ଦୂର ନୋହେ ମାରି
ଅପାର ତୀର୍ଥ କଲେ ହୋଇ ଦେଶାନ୍ତରୀ ।'' (ଆଦିପର୍ବ)

ପାରିବାରିକ ଶାନ୍ତି, ସାମାଜିକ ଶୃଙ୍ଖଳା ଲାଗି ପୁରୁଷର ଏକ ପତ୍ନୀ ଓ ନାରୀର ଏକ ସ୍ୱାମୀ ହେବା ଆବଶ୍ୟକ । ଏ ସଂପର୍କରେ ସମସ୍ତଙ୍କୁ ଚେତାଇ ସେ ଲେଖିଛନ୍ତି -

''କଳହେ ଆୟୁ ତୁଟଇ କଲେ ବେନି ଭାର୍ଯ୍ୟା
ସଚ୍ଛା କୀର୍ତ୍ତି ରହଇଟି କଲେ ଏକ ଭାର୍ଯ୍ୟା ।
ଅପାର ସ୍ତିରୀ ହରିଲେ ଆୟୁ କ୍ଷୟ ଯାଇ
ଅପାର ହିଂସାରେ ଦେହ ପତନ ହୁଅଇ ।''

କବି ଅର୍ଜୁନଙ୍କ ମୁଖରେ ହାରାବତୀଙ୍କ ପ୍ରତି ସେହିପରି କୁହାଇଛନ୍ତି -

''ପରଦାରା ଶୃଙ୍ଗାର ଗୋ ନୋହଇ ଯୁଗତେ
ନିୟତେ ବଡ଼ ଧର୍ମ ମୁଁ ଲଘିବି କେମନ୍ତେ ।
ପରସ୍ତିରୀ ମୋର ମାତା ପର ପୁରୁଷ ମୋ ପିତା
ପରଧନକୁ ଇଚ୍ଛା ମୁଁ ନକରଇ ସର୍ବଥା ।
ପର କାର୍ଯ୍ୟେ ଶତ୍ରୁକୁ ମୁଁ ନ ନାଶଇ ସର୍ବକାଳେ
ପରସୀମା ଭୂମି ଯେ ମୁଁ ନ ହରଇ ବଳେ ।''

(ବନପର୍ବ)

ଏଣୁ ଜନ ସାଧାରଣଙ୍କୁ ସତ୍ୟନିଷ୍ଠ, ନୀତି ନିଷ୍ଠ ଓ ଈଶ୍ୱର ବିଶ୍ୱାସୀ ହେବାକୁ ଏବଂ ଦୁଃଖ ସୁଖରେ ଅବିଚଳିତ ରହିବାକୁ ଉପଦେଶ ଦେଇ କବି ଲେଖିଛନ୍ତି -

''ଦୁଃଖର ଅନ୍ତରେ ପୁଣି ସତ୍ୟ ହୋଏ ଭୋଗୀ
ଯେହା ଯେ ବିଚାରଇ ସେ ପରମ ଯୋଗୀ ।''

ଅନ୍ୟ ସହ ବିରୋଧ କରିବା ଆବଶ୍ୟକ ହେଲେ ପ୍ରଥମେ ନିଜର ଶକ୍ତିକୁ ବିଚାରିବା ଆବଶ୍ୟକ । କବିଙ୍କ ଭାଷାରେ -

''ପରାକ୍ରମ ଅନୁକ୍ରମେ ହୋଇବାକ ଦ୍ୱନ୍ଦ୍ୱୀ
ସମାନ ଅନୁରୂପେ ହୋଇବାକ ବାଦୀ ।'' (ବିରାଟ ପର୍ବ)

ଭୀଷ୍ମଙ୍କ ମୁଖରେ କବି ଦୁର୍ଯ୍ୟୋଧନଙ୍କୁ ଉପଦେଶ ଭାବରେ ନିଜ ଭାଇ ପ୍ରତି ସ୍ନେହୀ ଓ ଦୁଃଖୀ ଲୋକଙ୍କ ପ୍ରତି ଦୟାଳୁ ହେବାକୁ ଏହିପରି କହିଛନ୍ତି -

''ସୋଦର ଅବଳ କରି ନୋହିବ କୃପଣ
ଦୁଃଖୀ ଜନେ ଦୟା କରିଥିବ ହୃଦୟେଣ ।
ଦୁଃଖୀ ଜନେ ପୀରତି କରିବ ତେଜି ମାୟା
ପଦାର୍ଥ ଅର୍ଜିଲେ ଜନେ କରିବ ସୁଦୟା ।''

(ଉଦ୍ୟୋଗ ପର୍ବ)

ମହାକବିଙ୍କ ଭାଷା ଓ ବର୍ଣ୍ଣନା ରୀତି ଥିଲା ଏହିପରି ସରଳ । ନୈତିକ ଆଦର୍ଶ ପ୍ରଚାର ଲାଗି କବି ପୁରାଣ ଲେଖିଥିଲେ । ସେ ଥିଲେ ପ୍ରକୃତରେ ମାନବପ୍ରେମୀ ଓ ସମାଜ ସଂସ୍କାରକ । ମହାଭାରତରେ ସାମାଜିକ ଅନ୍ୟାୟ, ଉତ୍ପୀଡନ ବିରୋଧରେ ପ୍ରତିରୋଧ କରିବା ବିଷୟ ମଧ୍ୟ କବି ଲେଖିଛନ୍ତି । ସେ ଚାହୁଁଥିଲେ ବ୍ରାହ୍ମଣ ଓ ଚଣ୍ଡାଳ ମଧ୍ୟରେ ସଦ୍‌ଭାବ ସୃଷ୍ଟି ହେଉ । ପୂର୍ବରୁ ଲେଖା ହୋଇଥିବା ହରି ସାହୁ କନ୍ୟା

ସହ ଯୁଧିଷ୍ଠିରଙ୍କ ବିବାହ ଓ ବଶିଷ୍ଠଙ୍କ ସହ ହରିଜନ କନ୍ୟା ଅରୁନ୍ଧତୀଙ୍କର ବିବାହ ତାହାର ଉଦାହରଣ ।

ଜଣେ ଉତ୍ତମ ରାଜା ଭାବେ କବି ଭୀଷ୍ମ ପର୍ବରେ ଶୁକ୍ର ନାମକ ଜଣେ ରାଜାଙ୍କ ବିଷୟ ବର୍ଣ୍ଣନା କରିଛନ୍ତି । କବିଙ୍କ ମତରେ ରାଜା ସନ୍ୟାସୀ ଭଳି ଚଳିବ । ନିଜେ ଭୋଗ ବିଳାସରେ ଚଳିବ ନାହିଁ । ସେ ପୁଣି ରାଜାର ଧର୍ମ ବିଷୟ ଶାନ୍ତି ପର୍ବରେ ବର୍ଣ୍ଣନା କରିଛନ୍ତି । ପ୍ରଜାମାନଙ୍କୁ ରାଜା ଶାନ୍ତିରେ ପାଳନ କରିବ । ଏପରି କଲେ ହିଁ ରାଜା ଓ ରାଜ୍ୟର ମଙ୍ଗଳ । ଦେବତା, ବ୍ରାହ୍ମଣ, ଗୁଣୀ ଲୋକଙ୍କୁ ଭକ୍ତି କରିବା ଓ କବିମାନଙ୍କୁ ସାହାଯ୍ୟ କରିବା ମଧ୍ୟ ରାଜାର କର୍ତ୍ତବ୍ୟ । ଶକ୍ତିର ଅଧିକାରୀ ହେଲେ ହେଁ ସେ ଅନ୍ୟର ଜିନିଷ ଜବରଦସ୍ତ ନେବ ନାହିଁ । କୃଷକମାନଙ୍କୁ କଷ୍ଟ ଦେବ ନାହିଁ, ଶରଣ ପଶିଥିବା ଲୋକକୁ ରକ୍ଷା କରିବ । ଏ ସଂପର୍କରେ କବିଙ୍କ ବର୍ଣ୍ଣନା ଏହିପରି -

''ଏସନେ ପ୍ରଜା ପାଳିବୁ ନୋହିବେ କେ ଦୁଃଖୀ
ପ୍ରଜାର ସୁଖରେ ସିନା ରାଜା ହୁଏ ସୁଖୀ ।
ନ୍ୟାୟେ ପ୍ରଜାକୁ ପାଳିଲେ ଇନ୍ଦ୍ର କରେ ବୃଷ୍ଟି
ରାଜାର ପାଳନେ ସିନା ରକ୍ଷା ହୁଏ ସୃଷ୍ଟି ।
ଗୁଣୀ ଗୁଣ ଜାଣିବାକୁ କରିଥିବୁ ପୂଜା
କବିମାନଙ୍କୁ କୃପଣ ନ ହୋଇବୁ ରାଜା ।''

କୃଷକ କବି ସାରଳା ପୁନଶ୍ଚ ସ୍ୱର୍ଗାରୋହଣ ପର୍ବରେ ଯୁଧିଷ୍ଠିରଙ୍କ ମୁଖରେ କୁହାଇଛନ୍ତି -

''ରାଜା ପାଳିଲେ ସେ ପରଜା ହୋଇ ସୁସ୍ଥ
ପ୍ରଜାପାଳନେ କୃଷି ଉପୁଜେ ବହୁତ ।
କୃଷି ଉପୁଜିଲେ ଭଣ୍ଡାଏ ହୁଏ ପୁଷ୍ଟ
ଜନ ଜନ୍ତୁମାନେ ନ ପାବନ୍ତି କଷ୍ଟ ।''

ଜୀବନକୁ ସଂଯତ କରିବା ଲାଗି ମଧ୍ୟ ସେ ବହୁ ଉପଦେଶ ଦେଇ ଯାଇଅଛନ୍ତି । କୌଣସି ବିଷୟରେ ଅତ୍ୟନ୍ତ ଅନୁରକ୍ତି ଦୁଃଖପ୍ରଦ । କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ପ୍ରଭୃତି ମନୁଷ୍ୟର ଦୁଃଖ ଦୁର୍ଦ୍ଦଶାର କାରଣ । ଏହାକୁ ଦମନ କରିବା ଉଚିତ । ଦେବତା, ବ୍ରାହ୍ମଣ ଓ ଗୁରୁଜନଙ୍କୁ ଭକ୍ତି, ଅତିଥିଙ୍କୁ ସତ୍‌କାର, ଦୟା, ପରୋପକାର, ସତ୍ୟ ରକ୍ଷା ପ୍ରଭୃତି ପ୍ରତ୍ୟେକଙ୍କର କରିବା ଉଚିତ । ଧୃତରାଷ୍ଟ୍ରଙ୍କ ଉଦ୍ଦେଶ୍ୟରେ ଗାନ୍ଧାରୀଙ୍କ ମୁଖରେ କବି କହିଛନ୍ତି -

''ପରନିନ୍ଦା ପରନିନ୍ଦା ଛାଡ଼ ଧୃତରାଷ୍ଟ୍ର
ଅନିତ୍ୟ ସଂସାର ଏ ଯେ ଅଟେ ମାୟାଘଟ ।
ଲୋଭ ମୋହ କାମ କ୍ରୋଧ ଅହଙ୍କାର ହିଂସା
ଏହା ଦୂର କର ସ୍ୱାମୀ ନ ବଢ଼ା ମନୀଷା ।''

କର୍ମଫଳ ଅବଶ୍ୟ ପ୍ରାଣୀକୁ ଭୋଗ କରିବାକୁ ହିଁ ପଡିବ । ସତ୍‌କର୍ମ କଲେ ଆୟୁ ଓ ଧନ ବର୍ଦ୍ଧିତ ହୁଏ ଏବଂ ଅସତ୍ କର୍ମରେ ଜଡିତ ହେଲେ ପ୍ରାଣୀ ଅଳ୍ପାୟୁଷ ଓ ଦୁଃଖୀ ହୋଇଥାଏ -

''ମା'ଗୋ ସକଳ ପ୍ରାଣୀକି କଲେ ଭଲ କର୍ମ
ଶିରୀ ଆୟୁଷ ବର୍ଦ୍ଧିତ ହୁଏ ହାଦେ ଧର୍ମ ।

ଧର୍ମ ଲଙ୍ଘିବା ପାଇଁକି ଅଟେ ଯେଉଁ ପ୍ରାଣୀ
ଆୟୁ କ୍ଷୟ ଯାଏ ତା'ର ଶିରୀହୁଏ ହାନି ।''

ଉପକାରୀର ଉପକାରକୁ ମନେ ରଖିବା ଉଚିତ । ଉଦ୍‌ଯୋଗ ପର୍ବରେ ଭାନୁମତୀ ଦୁର୍ଯ୍ୟୋଧନକୁ ଏହା କହିଛି -

''କଲା ଉପକାର ନ ମାନନ୍ତି ଯେଉଁଜନ
ଜୀବନ୍ତେ ନିନ୍ଦନ୍ତି ଅନ୍ତେ ନରକ ପତନ ।''

ବୈଶ୍ୟ ବା ବ୍ୟବସାୟୀ ଅଧିକ ଲୋଭ ପରବଶ ନହେବା ଓ ଦୁର୍ନୀତି ନ କରିବା ଉଚିତ । ଏ ସଂପର୍କରେ କବି ଏହିପରି ଲେଖିଛନ୍ତି -

''ଚାରିପାଦେ କିଣିବ ବିକିବ ପାଞ୍ଚ ପାଦେ
ପୁଣ୍ୟ ମାର୍ଗେ ଥିବ ନ ପଶିବ ଅପ୍ରମାଦେ ।''
— ହରିସାହୁ ପ୍ରତି ଯମ (ସ୍ୱର୍ଗାରୋହଣ ପର୍ବ)

ସମାଜରେ ନାରୀର ସ୍ଥାନ ବହୁତ ଉଚ୍ଚରେ । ସେମାନଙ୍କ କର୍ତ୍ତବ୍ୟ ସଂପର୍କରେ ସାରଳା ଦାସ ମହାଭାରତରେ ସତ୍ୟଭାମାଙ୍କ ପ୍ରତି ଦ୍ରୌପଦୀଙ୍କ ଉକ୍ତି ଭାବରେ ଏହା ଉଲ୍ଲେଖ କରିଛନ୍ତି ।

ସାରଳା ମହାଭାରତର ଉପଦେଶ ମୂଳକ ଉକ୍ତିଗୁଡ଼ିକ ସବୁ ଯୁଗ ପାଇଁ ଗ୍ରହଣ କରାଯାଇପାରେ । ଭୀଷ୍ମ ଶରଶଯ୍ୟାରେ ଥିବାବେଳେ ପାଣ୍ଡବମାନଙ୍କୁ ରାଜ୍ୟ ଶାସନ ସଂପର୍କରେ କେତେକ ଉପଦେଶ ଦେଇଥିଲେ । ତାହା ଏ ଯୁଗରେ ଶାସକମାନଙ୍କର ମଧ୍ୟ ପାଳିବା ଉଚିତ ।

ସାରଳାଙ୍କ ମହାଭାରତର ବହୁ କାହାଣୀ ଓ ଉକ୍ତି ଓଡ଼ିଶାରେ ପ୍ରବାଦ ବାକ୍ୟ ହୋଇଯାଇଛି । ଏସବୁ ମୁହେଁ ମୁହେଁ ଚଳି ଆସୁଛି ଶହ ଶହ ବର୍ଷ ଧରି । ଯଥା- 'କର୍ଣ୍ଣ ମଲେ ପାଞ୍ଚ, ଅର୍ଜୁନ ମଲେ ପାଞ୍ଚ,' 'ଝିମାଣି ଖେଳରୁ ମହାଭାରତ', 'ଗଙ୍ଗା ବୋଇଲେ ଥିବି, ଗାଙ୍ଗୀ ବୋଇଲେ ଯିବି,' 'କୋକୁଆ ଭୟ' (ସଂସ୍କୃତ ମହାଭାରତରେ 'କାଳ କରାଳ'), 'ଭୀମ ପହିଲି ବାଜି ହାରେ,' 'ଭୀମ ବଳ କୋଇଞ୍ଚାଙ୍କୁ ଜଣା', 'କୀଚକ ବାହୁ ବଳେ ବିରାଟ ରାଜା', 'ବେଳ ପଡିଲେ ଭଗବାନ ଗଧ ପାଦ ଧରନ୍ତି' - ଇତ୍ୟାଦି ।

ସଂସ୍କୃତ ଜାଣିନଥିବା ଲୋକଙ୍କୁ ପୁରାଣ ମାଧମରେ ଶିକ୍ଷା ଓ ଆନନ୍ଦ ପ୍ରଦାନ କରିବା ଥିଲା ସାରଳାଙ୍କ ମହାଭାରତ ରଚନାର ମୂଳ ଲକ୍ଷ୍ୟ । ଏଥିପାଇଁ ସେ ଚିରସ୍ମରଣୀୟ ହୋଇ ରହିଛନ୍ତି ।

